ସର୍ବଶ୍ରେଷ୍ଠ ଓଡ଼ିଆ ନାଟକ ବୋଲି କଳାହାଣ୍ଡି ପୁରସ୍କାର ପ୍ରାପ୍ତ

# କଳିଙ୍ଗ ବିଜୟ

( ଖ୍ରୀଷ୍ଟ ପୂର୍ବାବ୍ଦର ଐତିହାସିକ ଘଟଣା )

ଲେଖକ

**ଲାଲା ନଗେନ୍ଦ୍ର କୁମାର ରାୟ**

ତୃତୀୟ ସଂସ୍କରଣ, ୧୯୬୦

—ପ୍ରାପ୍ତିସ୍ଥାନ—

**ଦି ସିଟି ବୁକ୍ ଡିପୋ**

**ବାଲୁ ବଜାର, କଟକ-୨**

ପ୍ରଥମ ସଂସ୍କରଣ—ତା ୩୦ । ୮ । ୧୯୪୫
ଦ୍ୱିତୀୟ ସଂସ୍କରଣ—ତା ୪ । ୯ । ୧୯୫୦
ତୃତୀୟ ସଂସ୍କରଣ—ତା ୪ । ୯ । ୧୯୬୦

ପ୍ରକାଶକ—ଦି ସିଟି ବୁକ୍ ଡିପୋ
ବାଲୁ ବଜାର, କଟକ—୨

ମୁଦ୍ରକ—ଶ୍ରୀ ବିନୋଦ ବିହାରୀ ମିଶ୍ର
ଜନତା ପ୍ରେସ; ରାଜା ବଗିଚା କଟକ ୧

ମୂଲ୍ୟ ଦୁଇଟଙ୍କା ମାତ୍ର

ମୂଲ୍ୟ ଟ ୨।

# ପୂର୍ବାଭାସ

"କଳିଙ୍ଗ ବିଜୟ" ମୋର ପ୍ରଥମ ନାଟକ ଲେଖା ଏବଂ ଲେଖିଥିଲି ୧୮ ବର୍ଷ ତଳେ । ବୌଦ୍ଧ ଧର୍ମର ସୁବର୍ଣ୍ଣଯୁଗର ଇତିହାସ ଏହାର ମୂଳଭିତ୍ତି ତଥାପି ଏହାକୁ ଇତିହାସ ବୋଲି ଭାବିବା ଭ୍ରମ । ସ୍ୱକାଳୀୟ ଗୌରବ ବୃଦ୍ଧି ନିମିତ୍ତ ଲେଖକମାନେ ଇତିହାସର ସୀମା ଲଙ୍ଘନ କରି ପାରନ୍ତି । ଏ କ୍ଷେତ୍ରରେ ମଧ୍ୟ ତାହାହିଁ କରାଯାଇଅଛି । ନାଟକର ପ୍ରାଣ ହେଉଛି ବାସ୍ତବତା ଓ ସ୍ୱାଭାବିକତା ତାହାର ବିକାଶ ଘଟେ ଯଥାଯଥ ଗୁରୁ ଲଘୁ ଉଚ୍ଚାରଣ ରୀତି ଏବଂ ଚରମ ରମ୍ୟକ ଭାବର ବ୍ୟଞ୍ଜନା ଦ୍ୱାରା । ଏହା ଛଡ଼ା ନାନା ଶ୍ରେଣୀର ଲୋକ ଦର୍ଶକମଣ୍ଡଳରେ ଥାଆନ୍ତି ବୋଲି ନାଟକୀୟ ଦୃଶ୍ୟାବଳୀରେ ସବୁ ରସର ସମାବେଶ ଘଟାଇବା ଏକ ବିଶିଷ୍ଟ ଶୈଳୀ । ପୁଣି ନଟ ନଟୀ ସଭିଙ୍କୁ ସମ୍ୟକ ଭାବରେ ସଂଲିପ୍ତ ରଖିବା ଆବଶ୍ୟକ । ଏ ସବୁ ପ୍ରତି ଯଥା ସମ୍ଭବ ଦୃଷ୍ଟି ରଖି ମୁଁ ଏହାକୁ ଲେଖିଅଛି । ଉଚିତ ମତେ ପ୍ରଯୋଜନା କରି ପାରିଲେ ୩ଘଣ୍ଟାରେ ଅଭିନୟ ଶେଷ ହୋଇପାରେ । ଲେଖା ଶେଷ କରି ପାଣ୍ଡୁଲିପିଟି ମୁଁ ନାଟ୍ୟାଚାର୍ଯ୍ୟ ସ୍ୱର୍ଗୀୟ ଗୋବିନ୍ଦ ଚନ୍ଦ୍ର ଶୂରଦେଓଙ୍କୁ ଦେଇଥିଲି । ସେ ଦୟା କରି କେତେ ଜାଗା ସଂଶୋଧନ କରି ଦେଇଥିଲେ । ଏହାର ରୂପ ରେଖ ବ୍ୟଞ୍ଜନାରେ ମୋର ବନ୍ଧୁ ଡାକ୍ତର ଆଶୁତୋଷ ରକ୍ଷିତ ବହୁବିଧ ସାହାଯ୍ୟ କରିଥିଲେ ଓ ଡାକ୍ତର ଶ୍ରୀ ଅଦ୍ୱୈତ ଚରଣ ମହାନ୍ତି ୩ଟି ଗୀତ ବାନ୍ଧି ଦେଇଥିଲେ, ଦୁହିଁଙ୍କ ପାଖେ ମୁଁ ଚିର ଋଣୀ ।

ବହି ଖଣ୍ଡି ଛପାଇବାର ସବୁବିଧ ସୁବିଧା ଓ ନିଜର ଛାପାଖାନା ଥିଲେ ମଧ୍ୟ ଏହା ଏ ଯାବତ୍ ପ୍ରକାଶିତ ହୋଇ ନ ଥିଲା, ଗତବର୍ଷ ପୀଡ଼ିତ ଥିଲାବେଳେ କଳାହାଣ୍ଡି ରାଜ୍ୟର ତରୁଣ ମହୀପତି ଓଡ଼ିଆ

ଭାଷାରେ ଶ୍ରେଷ୍ଠ ନାଟକ ନିମିତ୍ତ ଏକ ସହସ୍ର ମୁଦ୍ରା ପୁରସ୍କାର ଘୋଷଣା କଥା ଶୁଣି ପାଣ୍ଡୁଲିପିଟି ପଠାଇଥିଲି । ସୌଭାଗ୍ୟ ବଶତଃ ବିଜ୍ଞ ବିଚାରକ ମାନେ ୩୬ ନାଟକ ମଧ୍ୟରୁ ଏହାକୁହିଁ ସର୍ବଶ୍ରେଷ୍ଠ ସିଦ୍ଧାନ୍ତ କଲେ ଏବଂ ମହାରାଜାଙ୍କ ଘୋଷଣାନୁସାରେ ମୁ ପୁରସ୍କାର ପାଇଅଛି । ତାହାହିଁ ବର୍ତ୍ତମାନ ମୁଦ୍ରଣ କରିବାର ପ୍ରଧାନ ସହାୟ । କଳାହାଣ୍ଡି ମହାରାଜାଙ୍କର ବଦାନ୍ୟତା ଉତ୍କଳ ସାହିତ୍ୟ ଇତିହାସରେ ଏକ ଯୁଗାନ୍ତର ପ୍ରେରଣା । ମୁଁ ତାଙ୍କ ନିକଟରେ ଚିର କୃତଜ୍ଞ; ଅଧିକନ୍ତୁ ସେ ଆମ ଜାତିର ମଧ୍ୟ ଧନ୍ୟବାଦର ପାତ୍ର । ପୁରସ୍କାର ପାଇଥିବାରୁ ଉତ୍କଳୀୟ ସମ୍ବାଦ ପତ୍ରମାନେ ମୋତେ ସମ୍ବର୍ଦ୍ଧନା ଜଣାଇଥିଲେ ସେଥି ନିମିତ୍ତ ସେମାନଙ୍କୁ ମଧ୍ୟ ଧନ୍ୟବାଦ ଦେଉଅଛି ।

ଆଜକାଲି କାଗଜର ଦୁର୍ଲ୍ଲଭତା ନିମିତ୍ତ ଇଚ୍ଛାଥିଲେ ମଧ୍ୟ ଶୋଭନ ଓ ସୁଲଭ ସଂସ୍କରଣ କରି ହେଲାନାହିଁ ବୋଲି ମୁଁ ଦୁଃଖିତ ।

ବହିଖଣ୍ଡି ସର୍ବାଙ୍ଗ ସୁନ୍ଦର ଓ ପ୍ରମାଦ ଶୂନ୍ୟ କରିବାକୁ ମୁଁ ଚେଷ୍ଟା କରିଛି, ତଥାପି ଭ୍ରମ ପ୍ରମାଦ ରହି ଯାଉଥିବା ବିଚିତ୍ର ନୁହେଁ, ପାଠକେ ସେ ତ୍ରୁଟୀ ମାର୍ଜନା କରିବେ ବୋଲି ଭରସା ଅଛି । ଅଭିଜ୍ଞ ପାଠକଙ୍କ ଭିତରୁ କେହି ବହିଟିର ଯଥାର୍ଥ ସମାଲୋଚନା କରି ତ୍ରୁଟି ଦର୍ଶାଇଲେ ମୁଁ ଚିର ବାଧିତ ହେବି ଏବଂ ପରବର୍ତ୍ତୀ ସଂସ୍କରଣ ସୁସଂସ୍କୃତ କରିପାରିବି । ଇତି ।

ଜନ୍ମାଷ୍ଟମୀ
ତା ୩୦-୮-୧୯୪୫
କଲିକତା ।

ଲାଲ ନଗେନ୍ଦ୍ର କୁମାର ରାୟ

## ୩ୟ ସଂସ୍କରଣ

ଦଶ ବର୍ଷପରେ କଳିଙ୍ଗ ବିଜୟର ୩ୟ ସଂସ୍କରଣ ପ୍ରକାଶ ହେଉଅଛି । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେଲା ପରେ ପ୍ରାଚୀନ କଳିଙ୍ଗର ରୂପ ରେଖ କ୍ରମେ ସୁସ୍ପଷ୍ଟ ହୋଇ ଆସୁଛି । ଏଣୁକରି କାଳ୍ପନିକ ଯେଉଁ ଐତିହାସିକ ଉପାଦାନ ନେଇ ମୁଁ ଏହି ନାଟକ ଲେଖିଥିଲି ତହିଁରୁ ଅନେକ ସତ୍ୟ ଆଭାସ କ୍ରମେ ପ୍ରକଟିତ ହେଉଅଛି । ବହିଖଣ୍ଡି ସୀମାବଦ୍ଧ କ୍ଷେତ୍ରରେ ପାଠ୍ୟ ପୁସ୍ତକ ରୂପେ ପ୍ରଚଳିତ, ଏହା ମୋ ପକ୍ଷରେ ଆଶାର କଥା । ଏହି ସଂସ୍କରଣରେ କୌଣସି ପରିବର୍ତ୍ତନ କରାଯାଇ ନାହିଁ କିନ୍ତୁ ମୂଲ୍ୟ କିଛି ଅଧିକ ହୋଇ ଅଛି । ୧୦ ବର୍ଷ ତଳେ ଛପାଖର୍ଚ୍ଚ ଓ କାଗଜ ଦାମ ଯାହା-ଥିଲା ବର୍ତ୍ତମାନ ତାହା ଅପେକ୍ଷା ଯଥେଷ୍ଟ ବଢ଼ି ଯାଇ ଥିବାରୁ ମୂଲ୍ୟ ବଢ଼ାଇବାକୁ ବାଧ୍ୟ ହେଲୁଁ ।

ଲେଖକ

# କୁଶୀଲବ

## ପୁରୁଷ

ଶିଳାଦିତ୍ୟ—କଳିଙ୍ଗର ରାଜା
ମାଧୁାଦିତ୍ୟ—କଳିଙ୍ଗର ରାଜଭ୍ରାତା
ଶତ୍ରୁଦମନ—କଳିଙ୍ଗର ସେନାପତି
ଅରିନ୍ଦମ—କଳିଙ୍ଗର ସେନାପତିଙ୍କ ପୁତ୍ର
ଅଶୋକ—ମଗଧର ସମ୍ରାଟ
ବୀର—ଶତ୍ରୁଦମନର ଦୌହିତ୍ର ଓ ପରେ କଳିଙ୍ଗର ରାଜା ନାଗ
ପର୍ଶୁରାମ—ବଜ୍ରପୁରନଗର ରାଜପୁତ୍ର ପରେ କଳିଙ୍ଗ ସେନାପତି

ଜଗୁ, ସେଠାଲ, ତର୍କଚଞ୍ଚୁ—୩ ଜଣ କଳିଙ୍ଗ ବାସୀ
ଦୂତ; ମନ୍ତ୍ରୀ, ସାମନ୍ତ, ନାଗରିକ, ସୈନ୍ୟ ଇତ୍ୟାଦି ।

## ସ୍ତ୍ରୀ

ପୁଷ୍ପ—ଶତ୍ରୁଦମନର କନ୍ୟା; ମାଧୁାଦିତ୍ୟର ବାଗ୍‌ଦତ୍ତା
ସଂଘମିତ୍ରା—ଅଶୋକଙ୍କର କନ୍ୟା
ଅନଙ୍ଗମଞ୍ଜରୀ—ବଜ୍ରପୁରନଗର ରାଜକନ୍ୟା
ପରେ କଳିଙ୍ଗର ରାଣୀ
ଚଞ୍ଚଳା—କଳିଙ୍ଗର ଜଣେ ବେଶ୍ୟା, ପରେ ସନ୍ୟାସିନୀ
ନଗର ବାସୀ ପୁରୁଷ ସ୍ତ୍ରୀ ଲୋକମାନେ ଓ ନର୍ତ୍ତକୀ ପ୍ରଭୃତି ।

# ପ୍ରସ୍ତାବନା

( ଉଷାର ରକ୍ତିମ ଆଭା ପ୍ରାଚୀ ଦିଗ୍‌ବଧୂକୁ ସିନ୍ଦୂରାକ୍ତ କରି ଦେଇଛି । ସ୍ଥାନେ ସ୍ଥାନେ ରଙ୍ଗ ରଙ୍ଗ ବିହଙ୍ଗର ବ୍ରାହ୍ମ ମୂହୂର୍ତ୍ତର କାକଳି ଧ୍ୱନି ଶୁଭୁଛି, ବିଶ୍ୱ ଯେପରି ବହୁ ଶତାବ୍ଦୀର ଅଶାନ୍ତ ଅନ୍ଧକାର ଭୋଗକରି ଆଲୋକ ଓ ଶାନ୍ତି ପାଇଁ ବ୍ୟଗ୍ର । ଉଷାର ଗାମ୍ଭୀର୍ଯ୍ୟ ଜଗତରୁ ଅପସରି ଯାଉଛି । ଏତିକିବେଳେ ପଞ୍ଚ ଉତ୍ତୋଳନ ଏବଂ ସୂକ୍ଷ୍ମ ଆସ୍ତରଣ ଅନ୍ତରାଳରେ ଗୋଲାପ ଆଲୋକଛଟା ସଙ୍ଗେ ଅଦୃଶ୍ୟ ନର୍ତ୍ତକୀମାନଙ୍କର ମାଙ୍ଗଳିକ ଗାନ । ସେମାନେ ହରିଷରେ ପ୍ରଜାପତି ତୁଲ୍ୟ କ୍ଷିପ୍ର ପଦଚାଳନାରେ ପୂର୍ବାକାଶକୁ ନିର୍ଦ୍ଦେଶ କରି ଗାଉଛନ୍ତି । )

( ଗୀତ ) ଏବେ ଫିଟୁଛି ସରଗର ସରଣୀ ।
ଉଇଁ ଆସୁଛି ଉଷା ହେମ ବରଣୀ ॥
ନବ ହାସେ, ନବବେଶେ, ନବ ଶୋଭା
ଧରି ମନୋହର ଧରଣୀ । ୧ ।
ଦିନ ହୀନ ଗାଥା ସରି ଯାଉଛି ।
ବୀର ମାତା ଗରିମା ତା ଫେରି ଆସୁଛି ॥
ପରକାଶି ସୁଧାରାଶି, ଭାସି ଆସେ
ପରପାରୁ ମୁକତିର ଭରଣୀ । ୨ ।



( ପଞ୍ଚ ପତନ )

# ପ୍ରଥମ ଅଙ୍କ

## ୧ ମ ଦୃଶ୍ୟ

( ସ୍ଥାନ—ସେନାପତିଙ୍କ ଗୃହର ବହିର୍ଦ୍ୱାର । କୋଠା ଦେହରେ କବାଟ, କବାଟକୁ ଲଗି ରାସ୍ତାଯାଏ ପାହାଚ ଶ୍ରେଣୀ ଲମ୍ବିଛି—ପାହାଚର ଦୁଇପାର୍ଶ୍ୱରେ କାଠବାଡ ଆଗରେ ରାସ୍ତା—ରାସ୍ତାଉପରେ ଠିଆ ହୋଇ ଦୁଇଜଣ ସନ୍ନ୍ୟାସୀ ଗୃହକୁ ଚାହିଁ ଗୀତ ଗାଇ ଭିକ୍ଷା ମାଗୁଥିଲେ । କିଛି କ୍ଷଣ ପରେ ଶତ୍ରୁଦମନ ସେହି କବାଟ ଖୋଲି ପାହାଚ ଉପରେ ଛିଡ଼ା ହୋଇ ମୁଗ୍ଧ ନୟନରେ ସେମାନଙ୍କୁ ଅନାଇ ରହିଲେ । ପରେ ପୁଷ୍ପ ଭିକ୍ଷା ଥଳୀ ଧରି ପହଞ୍ଚି ତଳକୁ ଓହ୍ଲାଇ ଆସି ସେମାନଙ୍କୁ ଭିକ୍ଷା ଦେଲେ । ସନ୍ନ୍ୟାସୀଦ୍ୱୟ ପୁଷ୍ପକୁ ଆଶୀର୍ବାଦ କଲେ । )

ସନ୍ନ୍ୟାସୀ ଦ୍ୱୟ– ଦିଗ୍‌ବିଜୟୀ ବୀରର ଜନନୀ ହୁଅ ମା—

(ପରେ ସନ୍ନ୍ୟାସୀ ଗୀତ ଗାଇଲେ)

ଭସି ଆସେ ସମୀରଣେ ମଙ୍ଗଳ ଲହରୀ,
ଅଞ୍ଜଳିରେ ତୋଳିଦେବ ଆସ ଖେଳା ପରିହରି ।
କିବା ସୁଖ ସୁତ ଜାୟା
ସବୁ ଭାଇ ମିଛ ମାୟା
ବୃଥା ବାୟା ହୁଅ ନାହିଁ ଦେଖ ବେଳ ଯାଏ ସରି,
ଅନ୍ଧ ହେବ କେତେ ଆଉ ମରୀଚିକା ପଛେ ଘୁରି ॥

(ଏହା ପରେ ପୁଷ୍ପ ଥାଳୀ ଧେନି ଭିତରକୁ ଚାଲିଗଲେ । ଶତ୍ରୁଦମନ ସେହି-ପରି ଠିଆହୋଇ ଗୀତ ଶୁଣୁଥିଲେ । ଭିକ୍ଷୁଦ୍ୱୟ ପୁଣି ଗୀତ ଗାଇ ଫେରି ଯାଉଥିଲେ, ଏହି ସମୟରେ ମନ୍ତ୍ରୀ ଉଦ୍‌ବିଗ୍ନ ମନରେ ପ୍ରବେଶ କରି କହିଲେ)

ମନ୍ତ୍ରୀ—ଏହିଥର୍ ରାଜ୍ୟ ଛାରଖାର ହେଲା ସେନାପତି ! ମହା—

(ଶତ୍ରୁଦମନ ତାଙ୍କୁ କଥା କହିବାକୁ ନ ଦେଇ ହାତ ଠାରି ବାରଣ କଲେ ଓ ସେହିପରି ମୁଗ୍ଧ ନୟନରେ ଭିକ୍ଷୁକ-ମାନଙ୍କର ଗଲା ପଥକୁ ଚାହିଁ ରହି କହିଲେ)

ଶତ୍ରୁ—ଯାଅ ଭିକ୍ଷୁ– ରାଜ୍ୟର ସମ୍ପତ୍ତି ତୁମ୍ଭେମାନେ, ମୋର ରାଜାର ମଙ୍ଗଳ କାମନା କର । (ଭିକ୍ଷୁଦ୍ୱୟ ଏକାବେଳେ ଅଦୃଶ୍ୟ ହେବା ପରେ ମନ୍ତ୍ରୀଙ୍କ ଆଡ଼କୁ ଚାହିଁ କହିଲେ) ହଁ, କ'ଣ କହୁଥିଲ ମନ୍ତ୍ରୀ ?

ମନ୍ତ୍ରୀ—ମୁଁ କଅଣ କହୁଥିଲି କି—ଏଇ ଯେ ଭିକ୍ଷୁକମାନଙ୍କ ଠାରୁ ରାଜାଙ୍କର ମଙ୍ଗଳ କାମନା କଲେ—ସେ କ'ଣ ସତେ ଘଟିବ ?

ଶତ୍ରୁ—ଏ ଆଶଙ୍କା କାହିଁକି କରୁଛ ମନ୍ତ୍ରୀ ?

ମନ୍ତ୍ରୀ—ସେହିପରି ଆଶଙ୍କାର କଥାଟି ତମକୁ ଜଣାଇବ ବୋଲି ରାଜ ସଭାରୁ ଏଇ ଆଜେ ଧାଇଁ ଆସିଲି ।

ଶତ୍ରୁ—କ'ଣ, କ'ଣ ?

ମନ୍ତ୍ରୀ — ରାଜ୍ୟ ଏଥର ଛାରଖାର ହେବାକୁ ବସିଲାଣି—

ଶତ୍ରୁ —ଅର୍ଥାତ୍ ?

ମନ୍ତ୍ରୀ —ଆଜି ଦରବାରରେ ପରା ବିଚାର ପଡ଼ିଥିଲା—

ଶତ୍ରୁ — ବିଚାର, କାହାର ବିଚାର ?

ମନ୍ତ୍ରୀ —ରାଜଦ୍ରୋହ ବିଚାର—ଅପରାଧୀ କୁମାର ମାଧ୍ବାଦିତ୍ୟ ।

ଶତ୍ରୁ —କୁମାର ମାଧ୍ବାଦିତ୍ୟ ? (ଅବିଶ୍ୱାସ, ବିସ୍ମୟ ଗୁହାଁଣୀ )

ମନ୍ତ୍ରୀ—ହଁ, ବିଶ୍ୱାସ କରିପାରୁ ନାହଁ ? ନ କରିବାର କଥାତ, ଏ ଯେ ଦୁନିଆ ବାହାର ବିଚାର ।

ଶତ୍ରୁ —ମାଧ୍ବାଦିତ୍ୟ ରାଜଦ୍ରୋହୀ ? ସେତ ସେଦିନ ମୋହର କଥାରେ ବିବାଦ ଛାଡ଼ି ଶିଳାଦିତ୍ୟଙ୍କୁ ରାଜା ବୋଲି ସ୍ୱୀକାର କରି ଶପଥ କଲେ ।

ମନ୍ତ୍ରୀ — ସେ ସିନା କଲେ, ରାଜା କଅଣ ବିଚାର କରିବେ ନାହିଁ ବୋଲି ଶପଥ କରିଥିଲେ ?

ଶତ୍ରୁ —ତା ନୁହେଁ, ତଥାପି ଭାଇତ,

ମନ୍ତ୍ରୀ — ସେଇଥି ପାଇଁ ତ ଭଗାର

ଶତ୍ରୁ —ଆଛା, ସାକ୍ଷୀ ପ୍ରମାଣ କିଛି ?

ମନ୍ତ୍ରୀ—ଅନାବଶ୍ୟକ, ଯେଉଁଠି ବିଚାରକ ନିଜେ ଅଭିଯୋକ୍ତା, ନିଜେ ଦ୍ରଷ୍ଟା, ନିଜେ ସବୁ, ସେଠି କି ସାକ୍ଷୀ ?

ଶତ୍ରୁ —ଯେତେହେଲେ ଧର୍ମ ବିଚାରତ ?

ମନ୍ତ୍ରୀ —ଯାହା କହିଲେ, ବିଚାରତ ନୁହେଁ, ବିଚାର ଛଳରେ ବିଚାରରେ ବ୍ୟଭିଚାର । ଅନ୍ୟାୟ

ଶତ୍ରୁ —ଏହା କଅଣ ହୁଏ ?

ମନ୍ତ୍ରୀ—ହୁଏ କଅଣ କହୁଛ, ହେଲା । ରାଜାଙ୍କରେ ଆଜି କୁମାର ମାଧ୍ବାଦିତ୍ୟ ସ୍ୱଦେଶରୁ ଚିର ନିର୍ବାସିତ, କଳିଙ୍ଗର ଚତୁଃସୀମା ଭିତରେ କେହି ତାଙ୍କୁ ଆଶ୍ରୟ ଦେଲେ ତାହାର ପ୍ରାଣଦଣ୍ଡ

ଘୋଷିତ ହୋଇଛି । ସଭାସଦ୍ କାହାର ମୁହଁରୁ ବାକ୍ସ୍ଫୂର୍ତ୍ତି ହେଲନାହିଁ, ଏ କଅଣ ? ତମେ ବିଚଳିତ ହୋଇପଡ଼ୁଛ କାହିଁକି ? ରଣକ୍ଷେତ୍ରରେ ମୃତ୍ୟୁ ତାଣ୍ଡବର ପ୍ରତ୍ୟକ୍ଷ ଦ୍ରଷ୍ଟା ବୀର ପର ତୁମେ ? ସମୟର ଗତି ବଦଳି ଯାଇଛି ସେନା-ପତି, ମନ୍ତ୍ରୀତ୍ୱ କରି ମୁଣ୍ଡବାଳ ପାଚିଗଲା, ଏ ଭଳି ବିଚିତ୍ର ପ୍ରହସନ କେବେ ଦେଖି ନ ଥିଲି ; କେବଳ ସେତିକି ନୁହେ ?

ଶତ୍ରୁ—ତେବେ ଆଉ କଅଣ ବାକି ?

ମନ୍ତ୍ରୀ—ହଁ ଆହୁରି ଅଛି, ରାଜାଜ୍ଞା ହୋଇଛି ରାଜଦଣ୍ଡ ଯେପରି ଲଙ୍ଘିତ ନ ହୁଏ ସେ ଭାର ତୁମ ଉପରେ ।

ଶତ୍ରୁ—( ଚକିତରେ ) ଶିଳାଦିତ୍ୟ ମନରେ ଏତେ କଥା ଲୁଚାଇ ଭାଇକୁ ସ୍ନେହ ଛଳ ମୋ ସମ୍ମୁଖରେ ଆଲିଙ୍ଗନ କଲା । ମୁଁ ତ ତାକୁ ବିଶ୍ୱାସ କରି ପ୍ରୀତି ପୁଲକରେ କାନ୍ଦି ପକାଇଥିଲି ।

ମନ୍ତ୍ରୀ—ତୁମେତ ଖାଲି ଯୁଦ୍ଧ ଯୁଦ୍ଧ କରି ଜୀବନଟା କଟାଇ ଦେଲ, ତୁମେ ଜାଣ ବୀରତ୍ୱ, ତୁମେ ଚିହ୍ନିପାରିବ ବୀର ହୃଦୟ, କିନ୍ତୁ ମାନବ ଚରିତ୍ର ତୁମେ ବୁଝିନ୍ତ କାହୁଁ ? ଥାଉ, ଆମକୁ ସେ ବଡ଼ କଥାରୁ କଅଣ ମିଳିବ, ବେତନଭୋଗୀ ଭୃତ୍ୟ ଆମେ—

ଶତ୍ରୁ—ତା ଠିକ୍ ମନ୍ତ୍ରୀ, ରାଜାଜ୍ଞା ପାଳକ ଆମ୍ଭେ । ବିଚାର ଅବିଚାର ସମାଲୋଚନା ରାଜ୍ୟର ରାଜାମୁଣ୍ଡରେ, ତଥାପି—ମନ ମାନୁ ନାହିଁ ମନ୍ତ୍ରୀ ! ପିଲାଦିନୁ ଦୁହିଁଙ୍କୁ କେଡ଼େ ଆଦରରେ କାଖେଇ କୁଣ୍ଢେଇ ମଣିଷ କରିଛି, ତା ଛଡ଼ା, ମାୟାଦିତ୍ୟ ମୋର ପୃଷ୍ଠ ଠାରୁ ମୋଟେ ବ ୫ ର୍ଷ ବଡ଼, ପୁଣି ବାଲ୍ୟସଙ୍ଗୀ—ହାୟ ବିଧାତା ।

ମନ୍ତ୍ରୀ—ଯାଉ ସେ କଥା —ମୋର ମଧ୍ୟ ମନ୍ତ୍ରୀଲୀଳା ଶେଷ ହୋଇ ଆସୁଛି —ଶିଳାଦିତ୍ୟଙ୍କ ଆଉ କାହାର ପରାମର୍ଶ ଲୋଡ଼ିବା ପରି

ଜଣା ଯାଉ ନାହିଁ—ଦୁଃଖ ଏତିକି ଯେ ଏତେ ଯତ୍ନରେ ସଂବର୍ଦ୍ଧିତ ରାଜ୍ୟ ଏହି ବୃଦ୍ଧ ଦୋଷରୁ ଧ୍ୱଂସ ହୋଇଯିବ ।

ଶତ୍ରୁ—ତାହା ତ ହେବ ମନ୍ତ୍ରୀ-ନଚେତ୍ ପିତୃଶବ ପାଖରେ ରଖି ରାଜ୍ୟ ପାଇଁ ଭ୍ରାତୃ ବିବାଦ—ଏକାବେଳେ ରାଜ୍ୟଜୟ ସଙ୍ଗେ ରାଜାଙ୍କର ମୃତ୍ୟୁ—ଧର୍ମ ବିଗ୍ରହ ନାମରେ ପକ୍ଷପାତ ଓ ଜିଘାଂସା-ଶେଷକୁ ଭାଇ ପ୍ରତି ଏହି ଚିର ନିର୍ବାସନ ଦଣ୍ଡ—ଏତେ ଉଚ୍ଛୃଙ୍ଖଳତା-ଏତେ ଅମନୁଷ୍ୟତା କ'ଣ ମା ଧରଣୀ ସହିବ ? ଆଜି ଦରବାରକୁ ଯାଇ ନ ଥିଲି ବୋଲି ମନରେ ଅସ୍ୱସ୍ତି ହେଉଥିଲା—ଦେଖୁଛି—ନ ଯାଇ ଭଲ କରିଛି—ହୁଏ ତ ସେ ଦାରୁଣ ନିର୍ମମ ଦୃଶ୍ୟରେ ମୁଁ ବିଚଳିତ ହୋଇ ପଡ଼ିଥାଆନ୍ତି ।

ମନ୍ତ୍ରୀ—ହଁ ନ ଯାଇ ଭଲ କରିଛ—ଯାଇଥିଲେ କୁମାର ମାଧ୍ୟାଦିତ୍ୟଙ୍କର ସେ ସତେଜ ବୀର ମୂର୍ତ୍ତି ଓ ସତ୍ୟ କାହାଣୀରେ ତୁମେ ନିଶ୍ଚୟ ଅଧୃଷ୍ୟ ଧରି ରହି ନ ଥାନ୍ତ— କି ବୀର୍ଯ୍ୟ । କି ନିର୍ଭୀକତା ! କି ଜ୍ୱାଳା ! ଅଥଚ କି ଜାଗ୍ରତ, ଜୀବନ୍ତ, ଅବସମ୍ବାଦୀ, ସତ୍ୟବାଦିତା—

ଶତ୍ରୁ—(କ୍ଷୋଭରେ) ଏହାର ମୂଳ କାରଣ ମୁଁ ପାପିଷ୍ଠ, ମୁଁ ଯେପରି ଧରେଇ ଦେଇ କୁମାରଙ୍କୁ ଏ ଭୀଷଣ ଦଣ୍ଡ ଭୋଗାଇଲି ।

ମନ୍ତ୍ରୀ—ତୁମେ କାହିଁକି ଭୋଗାଇବ, ସବୁ ଭାଗ୍ୟଲିପି, ହଁ ଭୁଲି ଯାଇ ଥିଲି ତୁମର ବନ୍ଧୁ, ବନ୍ଧୁମା ଦୁହିଁଙ୍କର ମଧ୍ୟ ବିଚାର ହୋଇଯାଇଛି ।

ଶତ୍ରୁ—କଅଣ କଅଣ—

ମନ୍ତ୍ରୀ—ରାଜାଜ୍ଞାରେ ସେମାନେ ମୁକ୍ତ ଏବଂ ମାନ୍ୟାସ୍ପଦ ଅଛନ୍ତି ।

ଶତ୍ରୁ—ମାନ୍ୟାସ୍ପଦ ଅଛନ୍ତି—ତେବେ ରାଜ୍ୟ ଫେରାଇ ଦେବାର ଆଉ କେତେ ଦୂର ?

ମନ୍ତ୍ରୀ—ରାଜ୍ୟ ଫେରାଇ ଦେବା କଅଣ କହୁଛ, ଘଟଣା ଦେଖି ମନେ ହୁଏ, ସେ ଆମ କଳିଙ୍ଗଟିକୁ ମଧ୍ୟ ଦଖଲରେ ନେବେ, ରାଜା ସମେତ—ସେହି ଦ୍ରାବିଡ଼ ସୁନ୍ଦରୀର ରୂପାନଳରେ ଶିଳାଦିତ୍ୟ ଦେଶର ଯଥାସର୍ବସ୍ୱ ଆହୁତି ଦେଇଦେବ—ଆଜି ମା:ପୁ-ଦିତ୍ୟର ନବାସନ ତାହାର ପ୍ରଥମ ସ୍ୱାହା — ଏଣିକି ଶିଳାଦିତ୍ୟ ନାମମାତ୍ର ରାଜା—ଅନଙ୍ଗମଞ୍ଜରୀହିଁ ଶୀଘ୍ର ହେବେ ଆମର ଦଣ୍ଡ ମୁଣ୍ଡର କର୍ତ୍ତ୍ରୀ, କଳିଙ୍ଗେଶ୍ୱରୀ ।

ଶତ୍ରୁ—[ ଚିତ୍କାର କରି ] କଳିଙ୍ଗେଶ୍ୱରୀଃ —ହାଁ, ହତଭାଗ୍ୟ—ଏଇଥି ପାଇଁ କଅଣ ଗତ ଦୁଇ ବର୍ଷକାଳ ଏହି ଜରାଜୀର୍ଣ୍ଣ ଶରୀରରେ ମୁଁ ଏତେ ଯୁଦ୍ଧ କଲି—ଏଇଥି ପାଇଁ କଅଣ ଲକ୍ଷ ଲକ୍ଷ ତରୁଣ କଳିଙ୍ଗସେନା ଆତ୍ମ ବଳି ଦେଇ ବିଜୟ କିଣିଲେ, ସବୁ ବୃଥା ହେଲା ମନ୍ତ୍ରୀ —କିଛି କଅଣ ବିହିତ ପ୍ରତିକାର— × × ×

ମନ୍ତ୍ରୀ—ପ୍ରତିକାର ନାହିଁ—ଭୁଲିଯାଉଛ ସେନାପତି, ଆମେ ସମସ୍ତେ ପ୍ରତିଜ୍ଞାବଦ୍ଧ । ସ୍ୱର୍ଗୀୟ ସମ୍ରାଟ ସମସ୍ତଙ୍କୁ ଶପଥ କରାଇ ନେଇ-ଛନ୍ତି ଯେ କାରଣ-ଘଟିଲେ ମଧ୍ୟ ଆମ୍ଭେମାନେ କଳିଙ୍ଗପତିଙ୍କ ବିରୁଦ୍ଧାଚରଣ କରିବୁ ନାହିଁ । ସତ୍ୟ ଯେ ସମସ୍ତ ଉପରେ ସେନାପତି

ଶତ୍ରୁ— ଉଃ

ମନ୍ତ୍ରୀ— ନା, ବିଚଳିତ ହେଲେ କିଛି ଲାଭ ନାହିଁ, ଖାଲି ନୀରବରେ ଦେଖିଯିବା, ରାଜ୍ୟ ଧ୍ୱଂସରେ ଯିବାର ଥାଏ ଯିବ, ତାର ଉପାୟ ନାହିଁ—ଆହୁରି ଶୁଣିଥାଅ ସେନାପତି. ତୁମ ପ୍ରତି କଳିଙ୍ଗେଶ୍ୱରଙ୍କର ବିଶେଷ ପ୍ରୀତି ଥିଲା ପରି ଦେଖି ପାରିଲି ନାହିଁ ।

ଶତ୍ରୁ—ଏତେଦୂର—ଏକାନ୍ତ ମିତ୍ର ଓ ବିଶ୍ୱସ୍ତଙ୍କୁ ଶତ୍ରୁଜ୍ଞାନ କରିବା- ତେବେ, ଯା ମା, କଳଙ୍ଗ ଧରଣୀ ।ଦୁର୍ଦ୍ଦିନ ରାହୁ ତୋତେ ଗ୍ରାସ କରିବାକୁ ଧାଇଁ ଆସୁଛି । ଆଉ କାହାର ସାଧ ନାହିଁ ତୋତେ ରକ୍ଷା କରିବ । ନଷ୍ଟପ୍ରାୟ ଏହି ଭ୍ରାତୃଦ୍ୱନ୍ଦର ଅନଳ ଶିଖା, ଆତତାୟୀର ହଳାହଳରେ ପ୍ରତିଗନ୍ଧମୟ ହୋଇ, କଳଙ୍ଗକୁ ମରଣ ପଥରେ ଟାଣି ନେବ-ରାଜାର ଏହି ଅବିଚାର କାହାଣୀ ପ୍ରଜା ପ୍ରାଣରେ ପ୍ରତିବିମ୍ବିତ ହୋଇ, ସମାଜର ଶୃଙ୍ଖଳା, ଦେଶର ଶାନ୍ତି ଏବଂ ମାନବତ୍ୱର ପବିତ୍ରତା ସମୂଳେ ଧ୍ୱଂସ କରିବ—ତେବେ ଯାଅ ମନ୍ତ୍ରୀ – ମୁଁ ଆସୁଛି—

(ଶତ୍ରୁଦମନ ଘର ଭିତରକୁ ଓ ମନ୍ତ୍ରୀ ଅନ୍ୟଆଡ଼େ ପ୍ରସ୍ଥାନ)

## ୨ୟ ଦୃଶ୍ୟ

(ଶତ୍ରୁଦମନର ଉଦ୍ୟାନ । ସମୟ ପ୍ରଦୋଷ । ଆକାଶରେ ପୂର୍ଣ୍ଣ ଚନ୍ଦ୍ରର ଉଦୟ ଆସି । ଉଦ୍ୟାନ ମଧ୍ୟସ୍ଥ ପୁଷ୍କରଣୀର ଆଡ଼କୁ ମୁହଁ କରି ପୁଷ୍ପ ଗୀତ ଗାଉଥିଲା । ସୁଲଳିତ ସଙ୍ଗୀତ ମୂର୍ଚ୍ଛନାରେ ମିଶିଛି କ୍ରନ୍ଦନର କରୁଣ ଛନ୍ଦ । ମାୟାଦିତ୍ୟ ଆସି ପ୍ରଚ୍ଛନ୍ନରେ ଦୂରରୁ ପୁଷ୍ପର ସଙ୍ଗୀତ ଶୁଣୁଥିଲେ । )

(ଗୀତ)

ଝିଁକେ ଦିବସ ମିଳନ ମାଧୁରୀ
ଆସେ ବିଦାୟ ବେଳ ।
ନିଜ ମନେ ଏବେ ଅବଶ ପ୍ରକୃତି
ଖେଳିବ ନୀରବ ଖେଳ । ଘୋଷା ।
ସରମରେ ମୋର ଆଶ ମଣି ଧୀରେ
ତୃଳ ଲୁଚିବେ ଗୋ ଅଭିମାନ ଛଳେ

ଗ୍ରୁଇ ଫର ଆଜି ଥାଇ କ ପାରବ
ମରମରେ ହାଣେ ଶେଳ ॥
ସୁନୀଳ ଗଗନେ ଗୃହିଁ ଏକମନେ
ପୂଜିବ ଏ ଶେଷ ଅରୁଣ ବରଣେ
ଆସାର କୁସୁମ ଯେତେ ଗୋ ଯତନେ
ନିଜ ମନେ କର ଠୂଳ ॥

( ଗୀତ ଶେଷରେ ହଠାତ୍ ମାୟାଦିତ୍ୟଙ୍କୁ ଦେଖି ପ୍ରେମ ବ୍ୟଥିତ ପ୍ରାଣରେ ଦଉଡ଼ି ଆସି ହାତଧରି କହିଲେ )

ପୁଷ୍ପ—ଆସ, ଏ ଦୁଇଦିନ କୁଆଡ଼େ ଥିଲ, ତମ ମୁହଁ ଏପରି ଶୁଖିଲା ଦିଶୁଛି କାହିଁକି ? କ'ଣ ହୋଇଛି କୁହ ।

ମାୟା— ନା କିଛି ହୋଇ ନାହିଁ ତ ( ଶୁଷ୍କ ହାସ୍ୟରେ )

ପୁଷ୍ପ —କିଛି ହୋଇ ନାହିଁ କ'ଣ ? ଚୁପ୍ ରହିଲ କାହିଁକି ? ( ମୁହଁକୁ ଅନାଇଁ ) ଭାରତ ମଜାର ଲୋକ ତୁମେ—ନିଜେ ଦୋଷ କରିବ, ପୁଣି ମୋ ଉପରେ ଅଭିମାନ କରି ମୁହଁ ଫୁଲେଇ ଆସିବ—ତୁମେ ଏକା ଅଭିମାନ କରି ଜାଣ ନା ଆଉ କିଏ ଜାଣେ ?

ମାୟା—( ହସିବା ଭଙ୍ଗିରେ ) ମୁଁ ତ ଅଭିମାନ କରି ନାହିଁ—ତମେ ମନକୁ ମନ ସେପରି ଦେଖୁଛ ।

ପୁଷ୍ପ—ଅଭିମାନ କରିନ ହଁ—ତେବେ ଏ ଦୁଇଦିନ ଥିଲ କୁଆଡ଼େ ଶୁଣେ—ଏପରି ମୁହଁ ଶୁଖାଇ ଛୁଆ ହେଲ କାହିଁକି— ମୋତେ ଡାକିଲ ନାହିଁ କାହିଁକି ?

ମାୟା—ଦୂରରୁ ତମର ସଙ୍ଗୀତ ଭଲ ଶୁଭୁଥିଲା ବୋଲି ଶୁଣୁଥିଲି ।

ପୁଷ୍ପ —ସଙ୍ଗୀତ ଗୋଟାଏ ଗୁଡ଼ା ଦିଶଟା ଶୁଣାଇବ—ଆଚ୍ଛା, ତୁମେ ଏ କି କାଣ୍ଡ କରିଛ କୁହ ତ ଆଗେ ?

ମାୟୂ—କେଉଁ କାଣ୍ଡ ?—

ପୁଷ୍ପ—ଆହା, ମୁଁ ମରିଯାଏତ—ସତେ ଯେପରି ଏତେ ସାଧୁ ପୁରୁଷ କିଛି ଜାଣନ୍ତି ନାହିଁ ।

ମାୟୂ—ନାହିଁ ପୁଷ୍ପ, ମୁଁ ତମ କଥା କିଛି ବୁଝିପାରୁ ନାହିଁ—କଅଣ କହୁଛ ?

ପୁଷ୍ପ —ଜାଣ ନାହିଁ—ଆଚ୍ଛା ମୋ ରାଣ ପକାଇଲ ।

ମାୟୂ—ତମରାଣ, ମୁଁ ବୁଝି ପାରୁନାହିଁ ।

ପୁଷ୍ପ —କେଉଁଠୁ ବୁଝିବ, ଆଉର ବଡ଼ ଭାଇଙ୍କ ସଙ୍ଗେ କଳି କରି ବୁଝିବ ।

ମାୟୂ—ଓହୋ, ସେ କଥା ତମ କାନକୁ ଆସିଲାଣି ?

ପୁଷ୍ପ—ବାର ଅଦନା କାନକୁ ଗଲା, ମୋ କାନ କ'ଣ ବନ୍ଦ କରନ୍ତି ।

ମାୟୂ—ନାହିଁ ପୁଷ୍ପ, ସେ ବିବାଦର ମୀମାଂସା ହୋଇ ସାରିଛି ଆଉତ କିଛି ନାହି—

ପୁଷ୍ପ —କ'ଣ ଆଉ କିଛି ନାହିଁ ? କହୁଁ କହୁଁ ଚୁପ୍ ହେଲ କାହିଁକି ?

ମାୟୂ—ଆଉ କଅଣ, ବିବାଦତ ନିଷ୍ପତ୍ତି ହୋଇ ଯାଇଛି ।

ପୁଷ୍ପ— ଭଲ ହୋଇଛି—ଛି, ଏଥି ସଙ୍ଗରେ ଯେ ରାଜବଂଶର କଳଙ୍କ ବାଇଦ ବାଜିଗଲାଣି, ମୋତେ ସେଥି ପାଇଁ ବଡ଼ କଷ୍ଟ ହେଉଛି । କିବା ସେ ରାଜ୍ୟ, ଯାହାପାଇଁ ଭାଇ ଭାଇର କଳି । ମୋ ଦେହ ଛୁଇଁ ଶପଥ କର ଆଉ ସେପରି ଚିନ୍ତା ମନରେ ଥାନ ଦେବ ନାହି । ବନ୍ଧୁ, ଭାଇ ବଡ଼, ସେ ରାଜା—ତୁମେ ସାନ—ମାନିକରି ଚଳ ।

ମାୟୂ—( ସ୍ୱଗତ ) ହଁ—ସେଇଆ କରିବାକୁ ହେବ—ସେଥିପାଇଁ ମୁଁ ଆସିଛି—ଆଜିଠାରୁ ମୋର ସମସ୍ତ ବିବାଦର ଶେଷ—ଏବେ ଶିଳାଦିତ୍ୟହିଁ ରାଜା—ଏବଂ ମୁଁ—

ପୁଷ୍ପ —ଆଉ ତୁମେ କ'ଣ ? ଚୁପ୍ ରହିଲ କାହିଁକି ?

ମାୟା—ମୁଁ ରଜାଙ୍କ ପାଳକ—

ପୁଷ୍ପ—ସେଇଆ କୁହ—ମୋ ମନ ଯେ ବାର ରକମ ଆଶଙ୍କାରେ ଭରି ଉଠୁଥିଲା—ରାଇଜ ଚନ୍ତାରୁ ଆମେ କ'ଣ ପାଇବା ? ଆମର କାହାର ପ୍ରତି ହିଂସା ନାହିଁ କମ୍ବା ଇର୍ଷା ନାହିଁ—କାହାର ପଦାର୍ଥରେ ଲାଳସା ନାହିଁ କି କାହାର ସ୍ୱାର୍ଥରେ ବାଧା ନାହିଁ—ଆମ ଦୁହିଙ୍କ ସଂସାର—ସେ'ତ ଚିର ନୂତନ ଆନନ୍ଦମୟ—ନୁହେ ?

ମାୟା—ହଁ (ମୌନ ହେବା)

ପୁଷ୍ପ—ପୁଣି କ'ଣ ଭାବୁଛ ?

ମାୟା—ତୁମର କଥା ହୃଦୟଙ୍ଗମ କରୁଥିଲି—

ପୁଷ୍ପ—କାହିଁକି, ସେଥିରେ ଭାବବାର କ'ଣ ଅଛି—ତୁମେ ଚିର ଦିନ ପାଇଁ ରହିଲ—ମୋର—ଆଉ ମୁଁ ଜନ୍ମ ଜନ୍ମ ପାଇଁ ରହିଲି ତୁମର,—ଏତ ଅତି ସରଳ କଥା ।

ମାୟା—ପୁଷ୍ପ ! ତୁମର ସରସ ପ୍ରେମ ଯେ ମାୟାବର୍ତ୍ତର ଗୋଲକଧାମ-

ପୁଷ୍ପ—ତୁମର ଓ ମୋର ମିଳନରେ ବିଚ୍ଛେଦ ରହିବ ନାହିଁ-ହତାଶ, ବିଷାଦ, କି ଭ୍ରାନ୍ତି ପଶି ପାରିବ ନାହିଁ—ଏହାଠୁ ବଳି ଆଉ କ'ଣ ଗୂଢ଼ ?

ମାୟା—(ସ୍ୱଗତଃ ଆଉ ସମ୍ଭାଳି ପାରୁନାହିଁ—ମମତାର ନିଗଡ଼ ବନ୍ଧନ ଭାଙ୍ଗିଯାଉଛି—ଏହାକୁ ନ ଜଣାଇ ଯାଇ ପାରୁନାହିଁ ? (ପ୍ରକାଶ୍ୟ) ପୁଷ୍ପ ! (ଗଭୀର କଣ୍ଠରେ)

ପୁଷ୍ପ—କଅଣ—କହୁ ନା ?

ମାୟା—ଆଜି ମୁଁ ତୁମଠାରୁ ବିଦାୟ ନେବାକୁ ଆସିଛି—

ପୁଷ୍ପ—ବିଦାୟ ନେବାକୁ ଆଉ ତ କାହିଁ ଯୁଦ୍ଧ ଲାଗିନାହିଁ—ଏତେ ଅଧୀର କାହିଁକି ? କୁଆଡେ଼ ଯିବକି ? କେତେ ଦିନ ପରେ ଫେରିବ ?

ମାୟୂ—କୁଆଡ଼େ ଯିବ—ଠିକ୍ ଜାଣେ ନାହିଁ—କିନ୍ତୁ କେବେ ଯେ ଫେରିବି ନାହିଁ—ଏ କଥା ଠିକ୍ ।

ପୁଷ୍ପ— ଯାଅ ମୁଁ ଏପରି ପରିହାସ ଭଲପାଏ ନାହିଁ—

ମାୟୂ—ନାହିଁ ପୁଷ୍ପ ! ପରିହାସ ନୁହେଁ—ମୁଁ ଯାଉଛି—

ପୁଷ୍ପ—କିଏ କହିଲା ? କାହା ହୁକୁମରେ ଶୁଣେ ?

ମାୟୂ—ରାଜ୍ୟର ରାଜା—

ପୁଷ୍ପ—ଦୂର୍ ମିଛକଥା—କ'ଣ ହୋଇଛି ସତ କୁହ—

ମାୟୂ—କହିଲିତ, ମୁଁ ଶିଳାଦିତ୍ୟ ସହିତ ସିଂହାସନ ନେଇ ବିବାଦ କରୁଥିଲି—ଉଭୟେ ଦରବାରୀ ନିଷ୍କାସନ କରୁଛନ୍ତି ଏପରି ସମୟରେ ଦେବ ପ୍ରେରିତ ତୁଲ୍ୟ ତୁମର ପିତା ଆସି ପହଞ୍ଚିଲେ—ତାଙ୍କର ବାକ୍ୟ, ତାଙ୍କର ତ୍ୟାଗ ପ୍ରତିଜ୍ଞା, ତାଙ୍କର ପବିତ୍ର ପରାମର୍ଶରେ ଆମର ବିବାଦ ତୁଟିଗଲା ଏବଂ ମୁଁ ଶିଳାଦିତ୍ୟଙ୍କୁ ରାଜା ବୋଲି ସ୍ୱୀକାର କଲି । ବର୍ତ୍ତମାନ ମୋର ସେହି ରାଜ ବିଦ୍ରୋହର ଦଣ୍ଡସ୍ୱରୂପ ରାଜାଦେଶ ହୋଇଛି—ମୋର ପିତୃରାଜ୍ୟରୁ ଚିର ନିର୍ବାସନ ନଚେତ୍ ମୃତ୍ୟୁ ।

ପୁଷ୍ପ—କଅଣ ପାଇଁ ରାଜ୍ୟ ନେଇ ବିବାଦ କରୁଥିଲ ? (ଚିନ୍ତିତରେ)

ମାୟୂ—( ଧୀରେ )ତୁମକୁ ରାଣୀ କରିବି ବୋଲି ।

ପୁଷ୍ପ —କ'ଣ ? ମୋତେ ରାଣୀ କରିବ ବୋଲି ? [ବିସ୍ମିତ]

ମାୟୂ—ହଁ ।

ପୁଷ୍ପ —ମୁଁ କଳିଙ୍ଗେଶ୍ୱରୀ ହୁଅନ୍ତି ?

ମାୟୂ—ଅବିଶ୍ୱାସ କାହିଁକି କରୁଛ ପ୍ରିୟେ ! ମୁଁ କି କେବେ ତୁମ ପାଖରେ ମିଥ୍ୟାବାଦୀ ହୋଇଛି ?

ପୁଷ୍ପ —(ଉଦ୍‌ବେଗରେ) ଅବିଶ୍ୱାସ ନୁହେଁ ହୃଦୟେଶ୍ୱର ! ମନରେ ବଡ଼ କ୍ଷୋଭ ହେଉଛି ଯେ ଏତେ ଦିନ ଯାଏ ଏ ଦୀନାର ଅନ୍ତର ବୁଝି ପାରିଲ ନାହିଁ—ତୁମେ ଜାଣ ନାହିଁ ମୁଁ ଯେ

ରାଜ୍ୟର ଅଧିଶ୍ୱରୀ ସେ ରାଜ୍ୟ କେତେ ସୁନ୍ଦର କେତେ ମହିମାମୟ—ସେଠାରେ ପାର୍ଥିବ ଭୟ ଭ୍ରାନ୍ତି କରୁ ନାହିଁ—ସେ ରାଜ୍ୟର ରକ୍ଷାପାଇଁ ଯୁଦ୍ଧ ଛଳରେ ହତ୍ୟା କାଣ୍ଡର ଅଭିନୟ ହୁଏ ନାହିଁ । ସେ ରାଜ୍ୟଟା ମୋର ଗଗନ ପରି ଅସୀମ, ପବନ ପରି ପ୍ରଶାନ୍ତ, ସାଗର ପରି ଉଦାର. ସେ ପବିତ୍ର ରାଜ୍ୟରୁ ମୋତେ ଓଟାରି ଆଣି ଏହି ଭ୍ରାନ୍ତିଜଡ଼ିତ ଭ୍ରାତୃହତ୍ୟା ଉପରେ ପ୍ରତିଷ୍ଠିତ, କଳିଙ୍ଗ ରାଜ୍ୟର ଅଧିଶ୍ୱରୀ କରନ୍ତ ? ତୁମେ ନିୟତ ଆଶଙ୍କାଚ୍ଛନ୍ନ ହୋଇ ରାଜକାର୍ଯ୍ୟରେ ନିଜକୁ ପାଟଶାରି ରହନ୍ତ, ଆଉ ମୁଁ ରାଜୋଦ୍ୟାନର ନିଭୃତ କୋଣରେ ବସି ନୀରବରେ ଅଶ୍ରୁପାତ କରୁଥାନ୍ତି ନା ? ହାୟ ! କି ଭୁଲ ତୁମର—

ମାୟା—ପୁଷ୍ପ ! ମୋତେ କ୍ଷମାକର···

ପୁଷ୍ପ—ହୃଦୟ ଦେବତା ମୋର, କ୍ଷମାନୁହେ—ଖାଲି ଅନୁତାପ କର ଯେ ଏ ଚିନ୍ତା କ୍ଷଣକ ସକାଶେ ହେଲେ ମଧ୍ୟ, ତୁମର ଅନ୍ତରରେ ସ୍ଥାନ ପାଇଥିଲା—ଆଉ ଆନନ୍ଦ କର ଯେ ସେ ଜଞ୍ଜାଳରୁ ରକ୍ଷା ପାଇଛ । ତୁମେ ମୋର ଯେଉଁ ରାଜ୍ୟର ଅଜାତ ଶତ୍ରୁ, ସମ୍ରାଟ, ସେ ରାଜ୍ୟରେ ଆଶଙ୍କା ନାହିଁ—ଅଛି ଆଶାର ଅଫୁରନ୍ତ ପ୍ରସ୍ରବଣ, ହିଂସା ଓ ଲାଳସା ନାହିଁ—ଅଛି ମୈତ୍ରୀ, ପ୍ରୀତି ଓ ଅହିଂସାର ସ୍ୱଚ୍ଛ ତ୍ରିବେଣୀଧାର ।

ମାୟା—ଶିଳାଦିତ୍ୟ ! ଥରେ ଦେଖି ଯା—ଏହି ତୁଚ୍ଛ ରାଜ୍ୟ ବିନିମୟରେ ମୁଁ କି ସ୍ୱର୍ଗ ସମ୍ପଦ ଲାଭ କରଛି, ଆଉ ରାଜ୍ୟ ଭ୍ରମରେ ତୁ ଜ୍ୱଳନ୍ତ ନର୍କର କି ବର୍ତ୍ତିକା ବରଣ କରି ନେଇଛୁ— ହୃଦୟେଶ୍ୱରୀ ମୋତେ ଯେ—ଆଜ—ଯିବାକୁ ହେବ ।

ପୁଷ୍ପ—(ଚମକପଡ଼ି) ହଁ ରାଜାଜ୍ଞାରେ ରାଜ୍ୟରୁ ଚିର ନିର୍ବାସନ ନୋହିଲେ— ନିକଏ ଚୁପରହି) ତାହାହେଲେ ମୋର କ'ଣ ହେବ ପ୍ରିୟତମ ! ମୁଁ ଯେ ଏକା ନୁହେ—ତୁମ୍ଭେ ଗୃଲଗଲେ ତୁମ୍ଭର ସନ୍ତାନର କଅଣ ହେବ ?

ମାୟା—ବାସ୍ତବିକ, ତୁମ୍ଭର ଏପରି ଅ ସ୍ଥାରେ ତୁମ୍ଭଙ୍କୁ ଛାଡ଼ିଦେଇ ଗଲେ ଲୋକନିନ୍ଦା ଅବଶ୍ୟମ୍ଭାବୀ, କିନ୍ତୁ ତୁମ୍ଭର ବୃଦ୍ଧ ପିତା-ଯେ କି ମୋତେ ମଧ୍ୟ ଆବାଲ୍ୟରୁ ପିତାମାତାର ସ୍ନେହ ଦେଇ ବଢ଼ାଇ ଆସିଛନ୍ତି, ତାଙ୍କୁ ଏହି ଓଶୀତିପର ବୟସରେ କିପରି ଏକାକୀ ଛାଡ଼ିଦେବି ? (ସ୍ୱଗତଃ) ବିଷମ ସମସ୍ୟା—କଣ କରିବି ? ହାୟ ! ଦୁର୍ଦ୍ଦୈବ ! ଚିର ଭାଗ୍ୟହୀନ ମୁଁ— ସୁଖ ଯେ ମୋ ନିକଟରେ ସ୍ୱପ୍ନ—ଯେତେବେଳେ ଆବାଲ୍ୟ ସହଚରୀ ପ୍ରେମ ପ୍ରତିମା ସଙ୍ଗରେ ବିବାହର ସମସ୍ତ ବିଷୟ ସ୍ଥିର ହୋଇ ଯାଇଛି— ନିଷ୍ଠୁର ନିୟତିର ଅଜଣା ସଙ୍କେତରେ ପିତୃପ୍ରତିମ ବୃଦ୍ଧ ସେନାପତି, ବିଜୟ ନଗର ବିରୁଦ୍ଧରେ ଅଭିଯାନ କଲେ—ପୁଣି ତାଙ୍କର ଫେରି ଆସିବା ସଙ୍ଗେ ସଙ୍ଗେ ମୁଁ ଚିର ନିର୍ବାସିତ ଏବଂ ପତ୍ନୀର ମୋର ଏ ଅବସ୍ଥା —ହାୟ ନିଷ୍ଠୁର ବିଧି ! ଏହାହିଁ କି ମୋ କପାଳରେ ଲେଖିଥିଲୁ ? ଏହାଠାରୁ ମୋର ମୃତ୍ୟୁହିଁ ଶ୍ରେୟସ୍କର— (ପ୍ରକାଶ୍ୟେ) ନା, ମୁଁ ରହିବି, ରାଜାଦେଶ ଅମାନ୍ୟ କରି ମୃତ୍ୟୁକୁହିଁ ବରଣ କରିବି—ଆଉ ମୃତ୍ୟୁ ପୂର୍ବରୁ ସମସ୍ତଙ୍କ ସମକ୍ଷରେ କହିଯିବି ଯେ ତୁମେ ମୋର ବିବାହିତ ପତ୍ନୀ ଏବଂ ତୁମର ଭାବି ସନ୍ତାନ ମୋର ଆତ୍ମଜ ।

ପୁଷ୍ପ—ନା, ପ୍ରିୟତମ ! ତୁମେ ଯାଅ— ପୁଷ୍ପର ପ୍ରେମ ଏତେ ଲାଳସା-ସିକ୍ତ ନୁହେଁ ଯେ ସେ ତା'ର ପ୍ରାଣର ଦେବତାଙ୍କୁ ଭ୍ରାନ୍ତ-ଜିଘାଂସା ନଳରେ ଆହୁତି ଦେବାକୁ ରଖିବ, କିନ୍ତୁ ଜାଣିଥାଅ

ହୃଦୟେଶ୍ୱର ! ପ୍ରେମର ଉଜ୍ଜ୍ୱଳରଶ୍ମି, ପୃଥିବୀର ପରପ୍ରାନ୍ତ ଭେଦି, ମୃତ୍ୟୁର ଅଜଣା ରାଜ୍ୟର ଅସୀମ ତଟରେ ସୁଦ୍ଧା, ପ୍ରେମିକର ସନ୍ଧାନ ରଖେ । କାୟିକ ଓ ମାନସିକ ବନ୍ଧନ-ଡୋର ଶତଧା ଛିନ୍ନ ହେଲେହେଁ ପ୍ରେମସିକ୍ତ ଆତ୍ମାର ମିଳନ ମାଧୁରୀ ଅନନ୍ତକାଳ ବ୍ୟାପୀ ଗଗନେ, ପବନେ, ସ୍ୱର୍ଗର ନନ୍ଦନ କାନନ ସୃଷ୍ଟି କରେ । ତୁମର ପୁଷ୍ପ ତୁମର ଥିଲା, ତୁମର ଅଛି ଓ ତୁମର ରହିଲା ।

ମାୟା— (ଗଦ ଗଦ ହୋଇ) ଲୋକନିନ୍ଦା – ସମାଜ—

ପୁଷ୍ପ—ଲୋକ ନିନ୍ଦା କଥା କ'ଣ କହୁଛ ? ତୁମର ପୁଷ୍ପ ଏପରି ଭୀରୁ ବା ହୀନା ନୁହେଁ ଯେ ସେ ନିଜର କାର୍ଯ୍ୟ ସକାଶେ କାହାରି ପାଖରେ ସଙ୍କୁଚିତ ହେବ । ଆମ୍ଭମାନଙ୍କର ବିବାହର ସାକ୍ଷୀ ସ୍ୱୟଂ ଭଗବାନ, ସତ୍ୟର ଅବଜ୍ଞା କେବେ ହେବନାହିଁ— ତାହାହେଲେ ଯେ ପୃଥିବୀ ରସାତଳକୁ ଚାଲିଯିବ—ମୋ ପାଇଁ ଦୁଃଖ କରନାହିଁ—ଆଶିର୍ବାଦ କର ଯେପରି ଅନ୍ତିମ ସମୟରେ ଥରେ ହେଲେ ତୁମର ଦେଖାପାଏ ।

ଷଷ୍ଠ ଦୃଶ୍ୟ

ରାଜ ଅନ୍ତଃପୁର କକ୍ଷ ।

(କଳିଙ୍ଗ ରାଜଭବନର ଭିତର କକ୍ଷ । ସମସ୍ତ ରାତ୍ରୀ—ଗୃହଆଡ଼ ଜ୍ୟୋତ୍ସ୍ନାବିଧ ଘର ଭିତରେ ସ୍ତିମିତ ଦୀପ ଶିଖା । କକ୍ଷ ଭିତରେ ରାଣୀ ଅନଙ୍ଗ ମଞ୍ଜରୀ କୁଟିଳ ନେତ୍ରଭଙ୍ଗୀସହ ଅସ୍ଥିର ଭାବେ ଏପାଖ ସେପାଖ ହେଉଛନ୍ତି । କେବେ ବସି ପଡ଼ୁଛନ୍ତି କେବେ ପୁଣି ଝିଙ୍କାକ ପାଖକୁ ଯାଇ ଅନାଉଛନ୍ତି ଯେମିତିକି କାହାର ସଙ୍ଗୋପନ ପ୍ରତୀକ୍ଷା )

ରାଣୀ—(ସ୍ୱଗତଃ) ପ୍ରତିଶୋଧ ନେବାପାଇଁ କଳଙ୍ଗର ରାଜ ଭ୍ରାତାକୁ ନିର୍ବାସିତ କରାଇଅଛି । ଏବେ ସେହି ସେନାପତିର ସର୍ବନାଶ କରାଇ—ପର୍ଶୁରାମକୁ ସେନାପତି କରାଇ ପାରିଲେ ମୋର ଉଦ୍ଦେଶ୍ୟ ସିଦ୍ଧହେବ । ସେନାପତି ଶତ୍ରୁଦମନ ମୋତେ ପିତୃ ମାତୃ ହୀନା କରି ଶତ୍ରୁର ସେବିକା କରାଇଅଛି, ମୁଁ ତାହାର ତତୋଧିକ ଉଚ୍ଛେଦ ସାଧନ କରିବି । ରାଜା ମୋର କରାୟତ । ତାକୁ କରପୁତ୍ତଳୀ କରି ଏ ପଥରେ ଅଗ୍ରସର ହେବି ।

(ପର୍ଶୁରାମର ପ୍ରବେଶ)

ପର୍ଶୁ—କି ଭଉଣୀ—ଏତେଦିନ ପରେ ଏ ଅସମୟରେ ଡାକରା ପଡ଼ିଲା କାହିଁକି ?

ରାଣୀ— (ଓଠରେ ହାତଦେଇ) ଆସ୍ତେ—ବିପଦର ସମ୍ଭାବନା ଅଛି ।

ପର୍ଶୁ—ବିପଦ, ତୁମ୍ଭେତ ରାଣୀ, ତୁମ୍ଭର କି ବିପଦ ?

ରାଣୀ—ହଁ ବିପଦ—ବୁଝିବା ଶକ୍ତିତ ନାହିଁ—ବୁଝିବୁ କାହୁଁ ।

ପର୍ଶୁ—ତେବେ ଜାଣିଶୁଣି ମୋତେ ବିପଦ ଭିତରକୁ ଡାକିବାର କି ପ୍ରୟୋଜନ ?

ରାଣୀ—ବିନା ପ୍ରୟୋଜନରେ ମୁଁ ଡାକନ୍ତି କି ହିଁକି ? ତୋ'ରତ ସବୁ ଯାଇଛି—ରାଜାଘରେ ଜନ୍ମି ଶତ୍ରୁର ଉପଜୀବୀ ହୋଇ ଯାବତ କୁସଙ୍ଗରେ ମାତି ତୋରତ ମନୁଷ୍ୟତ୍ୱ ଗଲାଣି । ହାଡ଼ି ତୋ ପଥ ତୁ ବାଛି ନେଇଛୁ, ମୁଁ ଦେଇ ନାହିଁ ।

ପର୍ଶୁ—ସବୁ ମିଛ କଥା, କେହି ବଦମାସ ଏ କଥା ରଟାଇ ଦେଇଛି ।

ରାଣୀ—ସତ ମିଛରେ କିଛି ଯାଏ ଆସେ ନାହିଁ, ମୁଁ ତ ଆଉ ସେଥି ପାଇଁ ତୋତେ ଡାକି ନାହିଁ । ତୁ ଅଧୋପାତର ଏତେ ତଳକୁ ଯାଇଛୁ ଯେ ଫେରାଇବା ଚେଷ୍ଟା ବୃଥା । ତେବେ ତୋର ବର୍ତ୍ତମାନ ଚରିତ୍ର ଗୋଟାଏ କାମରେ ଲାଗିବ ବୋଲି ଡକାଇଛି, ସେତିକି ଉପକାର କରିଲୁ ଭଲ ।

ପଶୁ—କି ଉପକାର ?

ରାଣୀ— ପିତୃ ଶତ୍ରୁର ପ୍ରତିହିଂସା—ପ୍ରତିଶୋଧ

ପଶୁ—ପ୍ରତିଶୋଧ—କିପରି, କଅଣ ପାଇଁ ?

ରାଣୀ—କଅଣ ପାଇଁ—ମନେପଡ଼ୁ ନାହିଁ । ଥରେ ସେହି ବିଜୟ ରଣ-
କ୍ଷେତ୍ରରେ ପିତାଙ୍କର ଅନ୍ତିମ ଆଦେଶ ମନେ କଲୁ ।

ପଶୁ—ସେଥିରୁ ଆଉ କ'ଣ ମିଳିବ । ଯେତେବେଳେ ଆଉ ଉପାୟ
ନାହିଁ ସେତେବେଳେ ବା ଏ ସୁଖ ଛାଡ଼ି ଅଜଣା ଆଶାରେ
କିଏ ଦଉଡ଼ିବ ? ନା ସେ ଚେଷ୍ଟା ବୃଥା—ମୁଁ ବେଶ ଅଛି
ଭଉଣୀ—ଯେମିତି ଅଛି ସେମିତି ଥାଏ—ଆମୋଦ ପ୍ରମୋଦ
ସ୍ଫୁର୍ତ୍ତି—ଆଉ ସେ ଗଣ୍ଡଗୋଳ କାହିଁକି ? ମୁଁ ଯାଏ—
ଏଥିରେ ରହି ପାରିବ ନାହିଁ ।

ରାଣୀ—ଆଉ ଟିକିଏ ରୁହ । ଆମୋଦ ପ୍ରମୋଦ ଯେତେ କରୁଛ କର
ମୁଁ ମନା କରୁନାହିଁ—ବରଂ ବେଶୀ କରିବା ଚେଷ୍ଟା କରିବ ।
ମୋତେ ଟିକିଏ ସାହାଯ୍ୟ କର । ମୋ ଆଖିରେ ସେହି ରଣ
ଛବି ନାଚି ରହିଛି, ରାଜ୍ୟଗଲା, ରାଜଭୋଗଲା, ପିତାମାତାଗଲେ,
ଶେଷକୁ ଶତ୍ରୁର ଦାସୀତ୍ୱ—ଏ ଚିନ୍ତା ଯେ ଦଣ୍ଡ ପଲକରେ
ମୋତେ ଜର୍ଜ୍ଜରିତ କରୁଛି । ଯାହା ଇଚ୍ଛା କରୁଛୁ କର,ମୋତେ
ଟିକିଏ ସାହାଯ୍ୟ କର, ସେନାପତି ପଦରେ ବସାଇଦେବ ।

ପଶୁ—ସେନାପତି ପଦରେ—ସତେ ! ମୁଁ ସେନାପତି ହୋଇପାରିବ
ହଉ ତେବେ କଅଣ କରିବ କହ—କିନ୍ତୁ ସେ ତ ତୋର ସ୍ୱାମୀ
ଯେତେ ହେଲେ—

ରାଣୀ—ଭଲ ବୁଝିଛୁ ଭାଇ—ଏହି ସ୍ୱାମୀ ସ୍ତ୍ରୀ ସମ୍ପର୍କ ପ୍ରହସନ ମାତ୍ର ।
କଳେ କଉଶଳେ ନିଜ କାର୍ଯ୍ୟ ସାଧିବାପାଇଁ ଏଇ ରାଣୀ
ପଦ ବରଣ । ଶିଳାଦିତ୍ୟଙ୍କୁ ସ୍ୱବଶରେ ଆଣିବା ପାଇଁ ଯାହା
କିଛି ଚେଷ୍ଟା ମୋର—ବର୍ତ୍ତମାନ ଶିଳାଦିତ୍ୟ ସହିତ

ଶବ୍ଦ ଦମନର ଭଲ ଭାବ ନାହିଁ--ଏହାର ଉପରେ ମୋର ଆଶା ନାହିଁ (ଦୂରରୁ ପଦଶବ୍ଦ ଶୁଣି) ଏଇ କିଏ ଆସୁଛି—ଲୁଚି ଟିକିଏ ଘର ଭିତରକୁ ଲୁଚିଯାଏ ।

(ରାଜାଙ୍କ ପ୍ରବେଶ ଓ ରାଣୀ ଆଣ୍ଠୁଇ ପଡ଼ି ପ୍ରଣାମ)

ରାଜା—ଉଠ ରାଣୀ—ତୁମେ ଏପରି କାହିଁକି ହୁଅ କୁହ ତ ?

ରାଣୀ—ମହାରାଜ ! କେଉଁ ଧାନହୀନ ଅବସ୍ଥାରୁ ଆଣି ମୋତେ ଶ୍ରୀଚରଣ କାହିଁ ସ୍ଥାନ ଦେଇଛନ୍ତି, ସେ କଥା ମୁଁ କିପରି ଭୁଲିବି ଏ ଜୀବନ ସିନା ଶ୍ରୀଚରଣଙ୍କ ଦୟାରୁ ରହିଲା, ସେନାପତିଙ୍କ ହାତରେ ଯେ କେବଳ ସରନ୍ତାଣି ?

ରାଜା—( ବିରକ୍ତିରେ ସ୍ୱଗତଃ ) ସବୁଠି ଦେଖୁଛି ସେହି ସେନାପତି, ସେନାପତି, ସେନାପତି ! ସମ୍ରାଟ ହୋଇ ମୁଁ ଯେପରି କିଛି ନୁହେଁ ।( ପ୍ରକାଶ୍ୟେ ) ଛି ରାଣୀ; ମୁଁ ଏତେ କରି ବୁଝାଇଛି; ତେବେ ବି ତୁମେ ଅତୀତର ସେ କଥା ଭୁଲୁ ନାହଁ । କୁହ ତୁମର ଆଉ କି ଅଭାବ ?

ରାଣୀ ନାହିଁ ମହାରାଜା ! ଦାସୀର ଆଉ କି ଅଭାବ ଥାଇପାରେ । ଶ୍ରୀଚରଣ ଯାହାର ହୃଦୟସର୍ବସ୍ୱ, ତାର ଆଉ କି ଅଭାବ । ଶ୍ରୀଚରଣଙ୍କର ସେବିକା ହୋଇ ମୁଁ ଯାହା ପାଇଛି ଜଗତର କେତେଟା ନାରୀ ତାହା ପାଆନ୍ତି ।

ରାଜା—ସେବିକା ନୁହଁ ରାଣୀ ! ତୁମେ ଯେ ମୋହର ହୃଦୟେଶ୍ୱରୀ ।

ରାଣୀ—ସେ କଥା କହନ୍ତୁ ନାହିଁ ପ୍ରଭୁ —ମୁଁ ନିତାନ୍ତ ନଗଣ୍ୟା, ସେବିକା ହେବାର ଯୋଗ୍ୟା ମଧ୍ୟ ନୁହେଁ —

ରାଜା ବଜ୍ରପୁ ନଗରର ରାଜକନ୍ୟା କଳଙ୍ଗେଶ୍ୱରୀ ହେବାର ଏକମାତ୍ର ଉପଯୁକ୍ତା—

ରାଣୀ—( ଅନ୍ୟମନେ ) ବଜ୍ରପୁ ନଗରର ସେହି ଦୃଶ୍ୟ ! ଉଃ,

ରାଜା—ମନରେ କଷ୍ଟ ହେଲା ରାଣୀ – ମତେ କ୍ଷମା କର, ଅଜ୍ଞାତସାରରେ ମୁଁ ତୁମର ନିଭୃତ ପ୍ରାଣତନ୍ତ୍ରୀରେ ଆଘାତ ଦେଇଛି—ଭୂଲି ଯାଅ ପ୍ରିୟେ ! ସେ ଶୋକାବହ ଇତିହାସ ଭୂଲିଯାଅ – ସବୁଠି ଦେଖୁଛି ସେହି ସେନାପତି, ସେନାପତି, ସେନାପତି, ଏହାର ଗୋଟାଏ କିଛି ବ୍ୟବସ୍ଥା କରିବାକୁ ହେବ ।

ରାଣୀ—ନା ମହାରାଜ ! ସେନାପତିଙ୍କର କଅଣ ଦୋଷ ? ସେ ତ କେବଳ ରାଜାଜ୍ଞା ପାଳନ କରି କର୍ତ୍ତବ୍ୟ କଲେ । ସେ ଦିନ ତ ଦେଖିଲେ, କି ଭାବରେ ଆପଣଙ୍କର ପକ୍ଷ ଧରି ବିବାଦ ବନ୍ଦ କଲେ ।

ରାଜା—ସେଇତ ତାର ଅସ୍ପର୍ଦ୍ଧା ରାଣୀ—ସେଇଥି ପାଇଁତ ମୋର ଏତେ ଅଶ୍ୱସ୍ତି—ଯେପରି ତାର ଦଉ ଏହି ସିଂହାସନ ସେ ଇଚ୍ଛା କଲେ କାଢ଼ି ନେଇ ପାରିବ । ସେନା ଗୁଡ଼ାକ ମଧ୍ୟ ତାର ବଶ । ଆଗେ ସେମାନଙ୍କୁ ହାତ କରେ, ପରେ ତା କଥା ବୁଝିବି—

ରାଣୀ—ମୋର ମିନତି ରଖନ୍ତୁ ମହାରାଜ ! ତାଙ୍କୁ ଶତ୍ରୁଜ୍ଞାନ କରନ୍ତୁ ନାହିଁ—

ରାଜା—କିନ୍ତୁ ମୋର ଯେପରି ମନେ ହୁଏ ତାହାର ଦ୍ୱାରାହିଁ ମୋର ଅନିଷ୍ଟ ହେବ । ରାଜଧାନୀରେ ଆଉ ମନ ଲାଗୁନାହିଁ-

ରାଣୀ—ତେବେ ଚାଲନ୍ତୁ ମୃଗୟାକୁ ଯିବା—ଶତ୍ରୁଦମନର ନିଜ-ଦୁର୍ଗ ଖଣ୍ଡଗିରିରେ ରହି ତାହାର ଅତିଥି ହେବା, ଆଉ ତା'ର ମନ କଥା ବୁଝି ଆସିବା—

ରାଜା—ଠିକ କହିଛ ରାଣୀ—ମୁଁ ଦୁଶ୍ଚିନ୍ତାଗ୍ରସ୍ତ ରହି ଅନେକ ଦିନୁ ମୃଗୟାକୁ ଯାଇ ନାହିଁ—ଆଚ୍ଛା ତେବେ ଯି. ।

ରାଣୀ—ଯେତେ ଶୀଘ୍ର ତୁମ୍ଭଙ୍କର ଇଚ୍ଛା ହୁଏ । ମାତ୍ର ଶତ୍ରୁଦମନଙ୍କୁ ଆଗରୁ ସମ୍ବାଦ ଦେଇ ରଖନ୍ତୁ ।

ରାଜା —ଆଚ୍ଛା—ଏହି ଦଣ୍ଡରେ ସମ୍ବାଦ ପଠାଉଛି । ତୁମେ ପ୍ରସ୍ତୁତ ହୁଅ [ପ୍ରସ୍ଥାନ ଓ ପରଶୁରାମର ବାହାରିବା]

ରାଣୀ—ଶୁଣିଲତ ଭାଇ - ଏହା ହେଉଛି କାର୍ଯ୍ୟର ବେଳ ।

ପର୍ଶୁ—ହଁ, ସବୁ ଶୁଣିଲି—ମୋତେ କ'ଣ କରିବାକୁ କୁହ ?

ରାଣୀ—( ଗଳାରୁ ହାର କାଢ଼ି )—ଏଇ ହାର ନେ ।

ପର୍ଶୁ—ହାର କ'ଅଣ କରିବ ?

ରାଣୀ—ଏହାକୁ ଦେଇ କୌଣସି ଚତୁର ଯୁବତୀ ଠିକ କର । ତାକୁ ସଙ୍ଗରେ ନେଇ ଆମ ସଙ୍ଗରେ ଖଣ୍ଡଗିରି ଚାଲ । ବାକି କଥା ସେଇଠି କହିବି । ଯା—[ ପରଶୁରାମର ପ୍ରସ୍ଥାନ ]

ରାଣୀ—( ସ୍ୱଗତ ) ହା ଭଗବାନ ! ସେହି ପରାଜୟ ପୂର୍ଣ୍ଣିମାଠାରୁ ଆଜି ଏଇ ପୂର୍ଣ୍ଣିମା ବର୍ଷଟିଏ ହେବାକୁ ଗଲାଣି—ଏହା ମଧ୍ୟରେ ଦିନେ ହେଲେ ତୁମ୍ଭର ନାମ ନେଇ ନାହିଁ । ବିଧାତା—ଯଦି ତୁମେ ସତେ ଥାଅ ଟିକିଏ ଦୟାକର । ମୁଁ କିଛି ସୁଖ ସମ୍ପଦ ଆଶା କରୁନାହିଁ—ମୁଁ ଚାହେଁ ତୁମ୍ଭର ଅଶିବମୟ ଦାନବୀ ଶକ୍ତି, ନାରକୀୟ ନୃଶଂସତା ଏବଂ କୂଟ ହଳାହଳ । ଦଣ୍ଡିକ ପାଇଁ ତୁମ୍ଭର ଅକରୁଣ ସଂହାର ଶକ୍ତି ମୋତେ ଦାନକର—ଥରେ ପ୍ରତିଶୋଧ ନେବାର ସୁଯୋଗ ଦିଅ ମୁଁ ମୋ ପିତୃକାର୍ଯ୍ୟ ସମାପ୍ତ କରି ଆତ୍ମ ରକ୍ତରେ ତର୍ପଣ କରେ । ( ବେଗେ ପ୍ରସ୍ଥାନ )

## ୪ର୍ଥ ଦୃଶ୍ୟ

(ତୋଷାଳୀ ଉପକଣ୍ଠ ପ୍ରାନ୍ତର

ସମସ୍ତ ସୂର୍ଯ୍ୟାସ୍ତ—ପୂର୍ଣ୍ଣ ନିର୍ଜନତା ସ୍ଥାନଟିକୁ ଅନେକଟା ଭୀତିପ୍ରଦ କରି ଦେଇଛି । ପଡ଼ିଆ ଭିତରେ ଗୋଟିଏ ବଡ଼ ଗଛ । ଜଗୁ ସେଠି ଚାରିଆଡ଼କୁ ଦେଖି ଦୃଷ୍ଟିରେ ଚାହିଁ ସନ୍ତର୍ପଣରେ ପ୍ରବେଶ କଲା )

ଜଗୁ —(ସ୍ୱଗତଃ) ଏ ଜାଗାଟି ଖାସା ନବେଳା—କଏ କାହିଁକି ଏଠିକି ଆସିବ । ଉଦୁଉଦିଆ ଖବରରେତ ଏ ବାଟରେ କେହି ଆସନ୍ତି ନାହିଁ, ଏତ ରାତି ରାତି ବେଳ । କାମଟା ଏଠି ଶେଷ କରି ନିଏ । ଯେଉଁ କାଲ ପଡ଼ିଲା ମଣିଷ ଟିକିଏ ନିଶାପାଣି କରିବାକୁ ଦାଦାଗଞ୍ଜ ହୋଇ ମଲା । ସେନାପତି ଫେରିଲେଣି, ଆଉ ରକ୍ଷା ନାହିଁ । କରେ ବାବୁ : ବଡ଼ ପାପୁରେ ଅଛ, ଲଡ଼େଇ ଫଡ଼େଇ କରି କଲା ଫତେ କର ଆମକୁ ବାଣ୍ଟିଉଇ କ'ଣ ପାଇବ । ଆମେ ଆମର ପେଟ ପାଟଣା ମାରି ଦମେ ଟାଣିବୁ—ତମର କ ଯାଏ । ହେ ଠାକୁର ଏତେ ଲୋକ ମରୁଛନ୍ତି, ତା ରଜା ଭେଣ୍ଡିଆ କୋଡ଼ିଏଟା ପୁଅ ହାତରେ ଗଲେ, ଏ ବୁଢା ଶଳାକୁ ଯମ କଅଣ ଭୁଲି ଗଲା । ଯାହାହେଉ ଏକାଠି ବସି ଟିକିଏ ଟାଣି ଥାଏ, ( ବସି ଗୁଲି ଟାଣିବା ଓ ସେଠାକୁ ଜେନାର ପ୍ରବେଶ ) ଏ ଶଳା ପୁଣି କଏ ଏଠାକୁ ଗଳିଲା ଅନାଇ) ଆରେ ଏ ସେତାଲ ଜେନା ହେବ ପରା ଖାସା ଦମବାଜ୍, ତା ଗାଁଆରେ ଖୁବ ଭଲ ଲୋକ କରେ ଗୋଡ଼ାବାଜ, ଶଳା ବୁଢ଼ା ବାଢ଼ ପାଣିପିଏ—ଦେଖି ଏଥର ମତଲବ କ'ଣ । ଲାଗିଯିବା,

ସେଠାଲ ଜେନା—( ସ୍ୱଗତଃ ) ବମ୍ ଭୋଲାନାଥ—ଏଠି କେହି ଦେଖିବ ନାହିଁ—ତ ହାତୀ ଉପରେ କେହି ଆସିବ ନାହିଁ-ଆମ ପରି ଗୁଣ୍ଡ କାହାର ହେବ ଯେ ( ଗଞ୍ଜେଇ କାଢି ଦଳିବା ଓ ଜଗୁ ବାହାର ପଡ଼ )

ଜଗୁ —( ସ୍ୱଗତଃ ଗିଆପ—ଗଞ୍ଜେଡ଼ଙ୍କର ବଡବୋପା - ସରକାରୀ ମଣିଷ ଦେଖିଲେ ଧର୍ମଯୁକ୍ତି ଫଳେଇ ହୁଏ ।

ଜେନା—( ଜଗୁକୁ ଦେଖି ) ସେଠି ଗୋଟାଏ ମଣିଷ ପରି ଦିଶୁଛି ନା ( ପ୍ରକାଶ୍ୟେ ) କିଏ ବସିଛୁରେ ।

ଜଗୁ —ଜେନାଏ—ଜଣା ପଡିଲା ଯେ, ହଉ ତମ କାମ ତମେ କର —ମୋ କଥାରୁ କ'ଣ ପାଇବ ?

ଜେନା—କରେ ଜଗୁଆ କରେ, କଅଣ କରୁଛୁ ମ ?

ଜଗୁ—ତୁମେ ଯାହା କରୁଛ ତାଇ—ହେଲେ ତାଠାରୁ ପାହାଚେ କମ୍ ଏଇ ଯାହାକୁ କହନ୍ତି ଏକା ଗୁଳିକେ କଲ୍ଲା ଫଟେ । ତୁମେ ସିନା ଲୁଚିଇ ଖାଅ, ଆମେ କ'ଣ କାହାକୁ ଡରଲିବାଲା । ଖାଲି ସେନାପତିଙ୍କ ଡରରେ ଏଣିକି ପଳାଇ ଆସିବା କଥା-ଅଶ୍ୱତ୍ଥାମଣା ରାଇଜ—ନିଶାଚଖୋର ବୋଲି ବାଡ଼େଇ ବାଡେଇ ହାଡ ଭାଙ୍ଗି ଦେବ । ଆର ଥର ତ ମୋ ଦୁଇ ଦୁଇଟା ହୁକା ଭାଙ୍ଗି ଦେଲା । ତେବେ ତୁମ କଥା ଜଣାପଡ଼ିଲେ ଆଉ ପଞ୍ଚ ପରମେଶ୍ୱର ଫାଦା ମାଡ଼ିବ ନାହିଁ—ମୋର ତ ସବୁ ଡ଼ାକ ଫୁକାର ।

ଜେନା—ନାହିଁମ ଜଗୁଆ—ମୁଁ କ'ଣ ରୋଜନା ଖାଏ, ଖାଲି ଦେହ ମୁଣ୍ଡ ବାଧିକ ପଡ଼ିଲେ, ମହାଦେବ ପ୍ରସାଦ, ଦମେ ଦିଦମ୍ ଟାଣି ଦିଏ, ଉଶ୍ୱାସ ଲାଗେ ।

ଜଗୁ —ତୁମେ ରୋଜ ଖାଅ କି ନା ଖାଅ ଗାରେ ପଡିବ ଯେ ।

ଜେନା—(ଖିନ୍ନ ଭାବରେ) ମୋ ଭାଇଟା ପର, ମୋ ପ୍ରାଣ, ମୋ ମୁଣ୍ଡ ଖାଉ, କାହାକୁ କହିବୁ ନାହିଁ – କାଲି ପଚେ ତୋ ଖବର ଚଳାଇବ—

ଜଗୁ –(ହସି ୨) ତୁମେ କଅଣ ପାଗଳ ହେଲ ଜେନାପୁଅ, ଦି ଦମ୍ ଗୁଡ଼ ଦଶ ଦମ୍ ଖାଇଲ – ମୋ ବାପର ଖାଉଚ କି ? ତୁମ ଧନରେ ତୁମେ ମଉଜ କରିବ—ମୋର କଅଣ ! ମୁଁ ଖାଲି ଉରାଉଥିଲି ନା – କଥାରେ କହୁଛି ଗୋଟାଏ କରିବ, ମହତ ଲୋକ ହାବୁଡ଼େ ପଡ଼ିବ । ଅଚ୍ଛା, ଭାଇ ତାକୁ ଉଠାଇବା ଦରକାର କଅଣ ଥିଲା ? ଏଇତ ଦିବର୍ଷ ହେଲା ଲଢ଼େଇକୁ ଯାଇ ରାଇଜ ଜିଣିଥିଲା ବୋଲି, ମୋ ଲୋକା ମା ସାନ୍ତଙ୍କ ଘରୁ ଶୁଣି ଆସିଛି, ବାହାଅନ୍ତୁ ଟିକେ ମନ ସୁଖରେ ନିଶା ଖିଆ– ଦେବ ନାହିଁ ।

ସେଠାଳି—କରେ ଜଗୁ ! ତୁ କ'ଣ ଜାଣୁନାହିଁ—ଘର ବୁଢ଼ା ପାଣି ଆଣୁ ଏ ହେଲଣି । ରାଜା ଦୁହପୁଅ ପରା ରାଇଜ ସଙ୍କାଟଣ ହାଣ କାଠ ଉପରେ ଥିଲେ ସେନାପତି ଆସିବାରୁ ତାଙ୍କୁ ରକ୍ଷା ତକ୍ଷଣ କଲା ଓ ସାନଭାଇ ରାଜ୍ୟରୁ ତଡ଼ାଖାଇଲା—

ଜଗୁ – ହେଲେତ, ସେମାନେ ହେଲେ ତାଙ୍କର ବ ବଡ଼ାନ୍ତ କଥା —ଦେଖିଲୁ ନାହିଁ ସେଦିନ ଲୋକାମିଶ୍ର ଓ ଦନେଇ ପଧାନ ହାତେ ଉହି ପାଇଁ କ'ଣ କଲେ । ରାଣ୍ଡୀ ଭାଉଜଟାକୁ ଦରମରା ଭାବେ ବେଇଜତ୍ କରି ଘରୁ ବାହାର କରି ଦେଲେ—ଏତ ରାଇଜ ନେଇ । ଏ ତାଙ୍କର ଘର ଘରକା କଳି—ସେନାପତିଙ୍କୁ ଅଣାଇ ଆମକୁ ହଇରାଣ କରାଇବାର କି ଦରକାର ଥିଲା ? ଘୋର କଳିଜା ବୋଲି – ନୋହିଲେ (ମିଠେଇ ହାତମାରି) ଘୋଡ଼ ଯାଉଁଛି ବେତମାଡ଼ ଧରମ ସହିବଟା ?

ଜେନା—ସରେମ ଜଗୁ—ମୁଁ ପରା ଡ଼ରରେ ଗଞ୍ଜେଇ ଗଛ ସବୁ ଉପାଡ଼ ପକାଇଲି—ଏବେ ଚିଲ୍କଏ ପାଇଁ କେତେ ନାଲଗୁ ହେଉଛ ।

( ଚକଚଞ୍ଚୁ ମଦ କୁମ୍ଭି ହାତରେ ଧର ଚଞ୍ଚଳା ସହିତ ପ୍ରବେଶ) ଇଏ ଗୋଟାଏ କଏ ଗଡ଼ଲଣି । ଦଣ୍ଡେ ହ ଏକୁଟିଆ ରହିବାକୁ ଦେବ ନାହିଁ । ପିଶାଚୁଣୀ ଗଛ ବୋଲି ଏଠିକି ଆସିଲି—ଏଠିବ ମାଛ ହାଟ ବସାଇ ଦେବେରେ ବାବା-ଜଗୁଭାଇ କଏ ଆସୁଛି ମୁଁ ପଳାଏ ।

ଜଗୁ—କାହିଁକି ପଳାଇବ ମ—ଏଠିକି କ'ଣ ଯେ ସେ ଲୋକ ଆସିବ । ଆମର ଦଳଆ କେହି ହେବ ।

ଜେନା—ନାହିଁରେ ଜଗୁ । ତୁ ସିନା ଏକା ଜାଣିଗଲୁ—ନୋହିଲେ ମୋ ଦମ ଟାଣିବା କଥା କାହାକୁ ମାଲୁମ ନାହିଁ ମ ।

ଜଗୁ —ଯାହା କହିଲ—ଏମିତିକା କଥାରେ ମୋତେ ଚଳ ଲାଗେ । ତମ ପୁଅ ରଘୁଆ ଏକ ନମ୍ବର ଗଞ୍ଜେଡ଼ । ବାପ ନ ଖାଇଲେ ପୁଅ ଏମନ୍ତ ପ୍ରେତ୍ରା ହାତ କୁଆଡ଼ୁ ପାଆନ୍ତା—ଟିକେ ଲୁଚି ରହି ମଜା ଦେଖନା—( ଜଗୁ ଓ ସେଠାରୁ ଲୁଚିଯିବା )

ଚକଚଞ୍ଚୁ—ଗୁଲିଆ ମ, ଗୁଲିଆ [ ଚଞ୍ଚଳାର ପ୍ରବେଶ ]

ଚଞ୍ଚଳା—ଇଏ କୁଆଡ଼େ ଆଣିଲ । ମୋତେ ଡ଼ର ଲାଗୁଛି—

ଚକଚଞ୍ଚୁ—ଡ଼ର, କ ଡ଼ର—କାହାକୁଡ଼ର—ଆମେ କ'ଣ କଉ ଶଳାର ଶଦେ ଖାଟିଏ ଧାରୁନା ଯେ ଡ଼ର—ଆମ ନୂଆ ରାଣୀର ଭାଇ ଥିବା ଯାଏଁ ମୋର ପୁଣି କାହାକୁ ଡ଼ର । ଆମ ଧନ ଆମ ମନ—ଢୋକେ, ପିଇ ଦେନା ଦେଖିବୁ ଡ଼ର କଅଣ ତା ବଡ଼ ବୋପା ଗୁଡ଼ ପଳାଇବ । ଆ ଗୁଲିଆ—

ଚଞ୍ଚଳା—ସତେ ! ପରଶୁରାମ କଅଣ ରାଣୀଙ୍କ ଭାଇ ।

ତର୍କ —ମଲ୍ଲ—ତୋତେ ମିଛ କହିବ ମୋର ଲାଭ କଅଣ । ତୁ ଆଜ ଯାଏଁ ବୁଝିନାହୁଁ । ରାଜ୍ୟତ ବର୍ତ୍ତମାନ ତାଙ୍କ ହାତରେ । ସେ ପରା ବିଜୟନଗର ରାଜାଙ୍କ ପୁଅ । ଦେଖିବୁ ତୁ ଯଦି ତାଙ୍କ ସୁ ନଜରରେ ଥରେ ପଡ଼ିବୁ ତୁ ବି ରାଣୀ ପାଲଟି ଯିବୁ, ସେତେବେଳେ ଭାବିବୁ ମୋ ସଙ୍ଗେ ଭାବ ରଖି କ'ଣ ନ ହେଲା । ସେଇଥି ପାଇଁ ମୁଁ କହୁଛି କାହାକୁ ଡ଼ରିବା ଦରକାର ନାହିଁ ।

ଜଗୁ —(ହୁକାଧରି ବାହାରି ପଡ଼ି) ଆମେ ବି କାହାକୁ ଡ଼ରୁ ହେ ମିଶ୍ର ପୁଅ ! ତୁମେ ବ୍ରାହ୍ମଣ ଛତିଶ ପାଟକ ରଜା ହୋଇ କାହାକୁ ନ ଡ଼ରିଲେ ଆମେତ ଧୋବା—କାହାର ପରବା ରଖୁ । (ଚଞ୍ଚଳା ପ୍ରତି) ଆସ ଲାଜ କାହିଁକି ? କେନାଏ ଢ ଅଛନ୍ତି, ଗମତ୍‌ଟା ଭଲ କରି ହେଉ ।

ତର୍କ—କରେ ଜଗୁଆ, କ ସେଠାଇ ! ତୁମେ ଦୁହେଁ ଏଠି, ବେଶ୍ ତ ଶ୍—ମୁଁ ତ ସଙ୍ଗୀ ଖୋଜୁଥିଲି ବସ, ବସ, ଟିକିଏ ଟିକିଏ ଚଣ୍ଡାମୃତ ପାଅ । ଆଜ କାହା ମୁହଁ ଗୁହିଁ ଉଠିଥିଲି, ( ସମସ୍ତଙ୍କର ମଦ୍ୟପାନ )

ଚଞ୍ଚଳା—( କଟାକ୍ଷେ ) ଆଉ କ ହାର ?

ଜଗୁଆ—(ମତୁଆଲ ହୋଇ) ସାଙ୍ଗୀ । ଗୋଟାଏ ଗୀତ, ଗୋଟାଏ ରସରସିଆ ଗୀତ ।

ସେଠାଇ—( ଢ଼ଳ ଢଳ ) ହଁ ହଁ

ତର୍କ —ହଉ—ଗା—ନା—

ଚଞ୍ଚଳା—          ଗୀତ ( ନୃତ୍ୟସହ )

ବାନ୍ଧିଛ ବନ୍ଧୁ କି ଅବା ଫାଶରେ
ରହିତ ନ ପାରେ ତିଳେ ନିଜ ବାସରେ । ଧ୍ରୁ ।

ଲୁଟାଇ ଏ ଯଉବନ   ଭୁଟାଇ ଏ କୁଳମାନ
ଛୁଟେ ମୁଁ ମିଳନ ରସ ମଧୁ ଆଶାରେ । ୧ ।
ସରଗ ସୁଧାଶିଶି ପୀରତି ଦିଏ ଢାଳି
ଯେତିକି ବିପଦ ଭୟ ସେତେ ହାସରେ । ୨ ।

(ହଠାତ ପର୍ଶୁରାମ ପ୍ରବେଶ ଓ ସମସ୍ତେ ଅଭିବାଦନ)

ପର୍ଶୁ—ନାହିଁ ନାହିଁ ଗୀତ ଫୀତ ଛାଡ଼ । ମୁଁ ଯାହା କହୁଛି ଶୁଣ ।

ତିକି—କଅଣ କଥା । କହନ୍ତୁ ମଣିମା—

ପର୍ଶୁ—ଦେଖୁଛତ ସେନାପତି ଓ ତାର ପୁଅ କେପରି ଦୁର୍ଦ୍ଦାନ୍ତ ପଣ କରୁଛନ୍ତି । ରାଇଜ ତମାମ ତା ଡ଼ରରେ ଥରହର । ତାକୁ ଜବଦ୍ କରିବାକୁ ହେବ ।

ସମସ୍ତେ—ସେ କଥା ଆଉ ପଚାରୁଛ କଅଣ ମଣିମା—ବୁଢ଼ାକୁ ଜବଦ୍ କଲେ ମଣିମାଙ୍କର ପରା କୋଟି ପରମାୟୁ ହେବ ।

ପର୍ଶୁ—ମୁଁ ତାହାଇ କରିବାକୁ ଆସିଛି—ତମେ ସବୁ ମୋତେ ସାହାଯ୍ୟ କର ।

ସମସ୍ତେ—କୁହନ୍ତୁ ଅମେ କଅଣ କରି ପାରିବା ?

ପର୍ଶୁ—ସମସ୍ତଙ୍କ ଦରକାର ନାହିଁ—କେବଳ ଚଞ୍ଚଳାକୁ ନେଇ ଖଣ୍ଡଗିରି ଅରଣ୍ୟ ଭିତରେ ମୁଁ ହାତ ଗୋଡ଼ ବାନ୍ଧି ପକାଇ ଦେବି । ରାଜା ରାଣୀ ଅରିନ୍ଦମ ସମସ୍ତେ ଶିକାରକୁ ଯାଇଛନ୍ତି- ସୁବିଧା ଦେଖି ସେ "ରକ୍ଷାକର ରକ୍ଷାକର" ବୋଲି ଚିତ୍କାର କରିବ । ଅରିନ୍ଦମ ତାକୁ ଉଦ୍ଧାର କରିବାକୁ ଦଉଡ଼ି ଆସିବ, ଚଞ୍ଚଳା ତାକୁ କାକୁତି ମିନତି କରି ବନ୍ଧନ ଦେଖାଇବ । ସେ ବନ୍ଧନ ଖୋଲିବାକୁ ନଇଁ ପଡିଲେ ପୁଣି ଆଉଥରେ ଚିତ୍କାରକରିବ, ମୁଁ ସେତିକି ବେଳକୁ ରାଜାରାଣୀଙ୍କୁ ସେଠାରେ ହାଜର କରାଇବି—ରାଜା ପଚାରିଲେ ଚଞ୍ଚଳା ଅରିନ୍ଦମକୁ ଦେଖାଇ କହିବ ଯେ ସେ ତାଙ୍କର ଧର୍ମ ନଷ୍ଟ କରିଥିଲା ।

ଆମେ ସବୁ ସାକ୍ଷୀ ହେବା । ବାସ ଏହାପରେ ଯେଉଁ ଘଟଣା ତାହା ମୁଁ କରିବ । ସେନାପତି ଝିଅ ପୁଷ୍ପକୁ ମଧ୍ୟ ଧରି ଆଣିଲେ ଭଲ ମଜା ହେବ । ତୁମ୍ଭେମାନେ ଏତକ କରି ପାରିଲେ ମୁଁ ରାଣୀଙ୍କୁ କହି ବହୁତ ପୁରସ୍କାର ଦିଆଇବ ।

ତର୍କ—ବୁଝିଲୁ—କିନ୍ତୁ ଏଥିରେ କଷ୍ଟ ବିପଦ ।

ଜଗୁ—କି ବିପଦ କଥା ଭାବୁଛ ଗୋସାଇଁ । ଯେଉଁଠି ରାଣୀ ଓ ରାଣୀଙ୍କ ଭାଇ ଆମର ସହାୟ ସେଠି ଆମର ଆଉ କିଏ ବୁମ ବଙ୍କା କରିବ—ଚାଲ ଏମିତିକା ସୁଯୋଗ ଛାଡ଼ିବା ନାହିଁ—

ପଶୁ—ସଫା ଜବାବ ମତେ ଦିଅ, ନୋହିଲେ ଅନ୍ୟଚେଷ୍ଟା କରିବ—

ସମସ୍ତେ—ନାହିଁ ମଣିମା—ଆମେ ସମସ୍ତେ ରାଜି,—ଆପଣ ନିଶ୍ଚିନ୍ତ ରହନ୍ତୁ—

ପଶୁ ତେବେ ମୁଁ ଯାଏ—ତୁମେ ପ୍ରସ୍ତୁତ ଥାଅ—ମୁଁ ଡ଼ାକିଲା ମାତ୍ରକେ ଯିବ । (ପ୍ରଧାମର ପ୍ରସ୍ଥାନ) ।

ତର୍କ—କି ଚଞ୍ଚଳା,—ପାରିବୁ ତ ?

ଚଞ୍ଚଳା—ମଲି ମୋର —କେତେ ଘର ବୁଡ଼ାଇ ଆସିଲି, ଏ ପୁଣି କିବା କଥା ଯେ ପାରିବି ନାହିଁ ।

ସମସ୍ତେ—କପାଳ ଖୋଲିଗଲା ମ—ଚାଲିଅ ଗୀତ ।

ଗୀତ

ଚାନ୍ଦିଛ ବନ୍ଧୁ କି ଅବା ଫାଶରେ ।

୫ମ ଦୃଶ୍ୟ

ସ୍ଥାନ—ଉଦ୍ୟାନ ସମୟ ସନ୍ଧ୍ୟା—

( ପୁଷ୍ପ ଗୀତ ଗାଇ ଗାଇ ପ୍ରବେଶ )

ମୁରଳ ବଣାଟି ମୋର, ସରଳ ନୟନେ ମାର ଆନମନେ ଉଠେ ଝୁରି
ଉଦାସ ଆକୁଳ ମନ, ମୂ ରୁଚ୍ଛ ପଡେ ତା ମନ, ଅଧୀର ହିଆଟି କୁହରେ ।
ସକଳ ବାସନା ମୋର ତୁମର ଚରଣେ ସଖା,
ଦର୍ଶନ ଲଭିଚ୍ଛି ଆଉ ନ ହେଲେ ନହେବ ଦେଖା,
ଯେବେ ଗୋ ବପଞ୍ଜ ମୋର—
କାଟିଲୁ ରାଗିଣୀ ଡୋ଼ର—
ନ ବାଜ ନ ବାଜ ମନେ ବେଦନା ଭରି । ୧ ।
[ଗୀତପରେ ଶମ୍ଭୁ ଦମନର ପ୍ରବେଶ]

ଶମ୍ଭୁ—ମା ତୋର କଅଣ ହୋଇଚ୍ଛି କହିଲୁ ଯେତେବେଳେ ଦେଖୁଚ୍ଛି, ଏକାକମା, ବିଷାଦମା, କେବଳ ସେହି ଏକ କରୁଣ ସଙ୍ଗୀତ, ତୁ ତ ଏପରି ନ ଥିଲୁ ମା ! ତୋ ମୁହଁରେତ ସବୁବେଳେ ହସ ଖେଳ ଲଗି ରହିଥିଲା ।

ପୁଷ୍ପ—କାହିଁକି ବାପା! ତୁମେ ମୋ ଲଗି ଏତେ ଚିନ୍ତିତ ହେଉଛ ? ମୁଁ ତ ବେଶ୍ ଅଛି ବାପା ! ତୁମ ସ୍ନେହ ଯେ ମୋର ସ୍ୱର୍ଗ ବାପା ।

ଶମ୍ଭୁ—(ସ୍ୱଗତଃ) ସେ ବି ଠିକ୍ ଏହିପରି କହୁଥିଲା । ଠିକ୍ ଏହି ପରି ଭାଷା, ଏହିପରି କଣ୍ଠ, ଅବିକଳ ଏହିପରି ମନ ।

ପୁଷ୍ପ—କଣ ଭାବୁଛ, ବାପା ?

ଶମ୍ଭୁ—ନାହିଁ ମା କିଚ୍ଛି ନାହିଁ ।

ପୁଷ୍ପ—ହଁ ବାପା ତୁମେ ମଝିରେ ମଝିରେ ଏମିତି କେତେ କ'ଣ ଭାବିଥାଅ, ମୋତେ କିଛି ଭଣ୍ଡାଇ ପାରିବ—କୁହ ବାପା- ?

ଶମ୍ଭୁ—[ସ୍ୱଗତଃ) ଯେତେବେଳେ ଝିଅଙ୍କ ଧରିଚ୍ଛି ନ ଶୁଣି ଛାଡ଼ିବ ନାହିଁ [ପ୍ରକାଶ୍ୟେ] ତେବେ ଶୁଣ ମା, ତୋତେ ଦେଖିଲେ ତୋର ମାଆର କଥା ବରବର ମନେପଡ଼େ ।

ପୁଷ୍ପ—ମୋର ବି ମା ମନେ ପଡ଼େ ବାପା ।

ଶତ୍ରୁ —ହଁ ଲୋ ବାଇଆଣୀ—ସେ ଆଜକୁ ୧୫ ବର୍ଷ ତଳର କଥା-ତୁ ସେତେବେଳେ ମୋଟେ ଦେଢ଼ବର୍ଷର ପିଲା—ତୁ ତାର ଥିଲୁ ଅଞ୍ଚଳରନିଧି, ସର୍ବସ୍ୱ ଧନ, ମଲାବେଳେ ସେ ଯେ ତୋତେ ମୋଠାରେ ସମର୍ପି ଦେଇ କହିଲା ସ୍ୱାମୀ ! ମା ଛେଉଣ୍ଡଟିର ସବୁ ଦୋଷ କ୍ଷମା କରୁଥିବ । ସେଥି ପାଇଁ କୌଣସି ସମୟରେ ତୋର ବିରସ ମୁଖ ଦେଖିଲେ ମୋ ମନରେ ତୋ'ର ମାଆର ସେହି କଥା ମନେ ପଡ଼େ ଏବଂ ମନେ ହୁଏ ଯେ ସ୍ୱର୍ଗଲୋକରୁ ସୁଦ୍ଧା ସେ କାନ୍ଦି ଉଠୁଥିବ ।

ପୁଷ୍ପ —ତଥାପି ପିତା, ତୁମର ଏତେ ଭାବନା କରିବାର ହେତୁ ମୁଁ ବୁଝୁନାହିଁ ।

ଶତ୍ରୁ —ବାପ ମାଙ୍କର ଭାବନା ତୁ କ'ଣ ବୁଝିବୁ ଝିଅ—ଆଗେ ତୁ ନିଜେ ପୁଅ ଝିଅର ମା'ହୋ ତେବେ ଜାଣିବୁ ତୋର ଏ ବୁଢ଼ା ବାପା ସତ କହୁଛି କି ମିଛ କହୁଛି ।

ପୁଷ୍ପ —ପୁଅ ପାଇଁ ଅବା ଏତେ ଚିନ୍ତା ଦରକାର ଶୋଭାପାଏ, ଝିଅ ପାଇଁ ଏତେ ସ୍ନେହ ନ ଥିଲେ ଭଲ ।

ଶତ୍ରୁ —କାହିଁକରେ ପାଗଳ—ବାପ ମା ପାଖରେ କ'ଣ ପୁଅ ଝିଅ ତଫାତ୍ ଥାଏ ।

ପୁଷ୍ପ —ଥାଏ ନାହିଁ ? ପୁଅଟ ଆଉ କୁଆଡ଼େ ଯିବନାହିଁ—ଝିଅ ଦୁଇ ଦିନ ପରେ ବାହା ହୋଇ ପର ହୋଇଯିବ ।

ଶତ୍ରୁ —( ହଠାତ୍ ଚମକି ) ଭଲ କଥା ମନେ ପକାଇ ଦେଇଛୁ । କୁମାର ମାଧ୍ୟାଦିତ୍ୟ ଖବର କ'ଣ ଜାଣୁ । ତାଙ୍କ ସହିତ ତୋର ସାକ୍ଷାତ ହେଲଣି ?

ପୁଷ୍ପ —ହଁ ବାପା ଏଇତ କେତେକ୍ଷଣ ଆଗରୁ ମୋଠାରୁ ବିଦାୟ ନେଇ ଗଲେ ।

ଶତ୍ରୁ —( ବିସ୍ମୟରେ ) ବିଦାୟ ନେଇଗଲେ ?

ପୁଷ୍ପ—ହଁ ବାପା, ରାଜାଙ୍କର ଆଦେଶ ଚିର ନିର୍ବାସନ ନଚେତ୍ ମୃତ୍ୟୁ, ମୃତ୍ୟୁ ଅପେକ୍ଷା ନିର୍ବାସନ ଅଧିକ ପ୍ରିୟ ନୁହେଁକି ?

ଶତ୍ରୁ—( ଉଦ୍‌ବେଗରେ ) କୁମାର ତୋତେ ଏକା ପକାଇ ଦେଇ ଚାଲିଯାଇଛି ? ସତ କହୁଛୁ ପୁଷ୍ପି ?

ପୁଷ୍ପ—ଶତ୍ରୁଦମନ କନ୍ୟା ମିଥ୍ୟା କହିବାକୁ କେବେ ଶିଖି ନାହିଁ ବାପା ।

ଶତ୍ରୁ—ତେବେ ଉପାୟ ( ଉଦବେଗଭାବେ )

ପୁଷ୍ପି—କ'ଣ କହୁଛ ବାପା; ମୁଁ କିଛି ବୁଝି ପାରୁନାହିଁ । ତୁମର ଦେହ କି କିଛି ଅସୁସ୍ଥ ଅଛି ?

ଶତ୍ରୁ—(ବିରକ୍ତ ସହିତ) ଯା ମୋ ସମ୍ମୁଖରୁ ବାହାରି ଯା, ନିଷ୍କଳଙ୍କ ବଂଶରେ କଳଙ୍କ ଲେପନ କରି ଆଉ ମୋ ସମ୍ମୁଖରେ ଛୁ ଛିଡ଼ାହୋ ନା—ଯୌବନ ମଦରେ ଉନ୍ମତ୍ତ ହୋଇ ଥରେ ଭୂତ୍ ଭବିଷ୍ୟତ ଭାବିଲୁ ନାହିଁ—ଥରେ ପଦ ମର୍ଯ୍ୟାଦାର କଥା ଭାବିଲୁ ନାହିଁ—ନିର୍ଜ୍ଜନରେ ଗାନ୍ଧର୍ବ ବିବାହ କରି ନିଜର କୁମାରୀତ୍ୱକୁ ପାଶୋରି ଦେଲୁ । ଆଉ ସମ୍ପ୍ରତି ସେ ମାୟାବିଦୈତ୍ୟ, ଅସହାୟା କୁମାରୀର ସର୍ବନାଶ କରି ତାକୁ ଅକୂଳସାଗରରେ ଭସାଇ ଦେଇ ପଳାଇଗଲା ।

ପୁଷ୍ପି—ପିତା ! ପିତା !! ତାଙ୍କର ନିନ୍ଦା କରନ୍ତୁ ନାହିଁ ।

ଶତ୍ରୁ—( ବିରକ୍ତିରେ ) ନିନ୍ଦା କରିବି ନାହିଁ—ଆଉ ପୁଷ୍ପ ଚନ୍ଦନ ଦେଇ ପୂଜା କରିବି—ମୋର ନିଷ୍କଳଙ୍କ ବଂଶ ଗରିମାକୁ କଳଙ୍କାବୃତ୍ତ ଦେଖି ନୀରବ ରହିବି—ନାରୀ—

ପୁଷ୍ପି—ନାରୀ ବୋଲି ଅବଜ୍ଞା କରନାହିଁ ପିତା, ନାରୀ ଜାଣେ ସ୍ୱାମୀ ସେବା ନାରୀ ଜାଣେ ଜଗତର ଦୁଃଖ ବରଣ— ନିର୍ଯ୍ୟାତନ ସହିବାକୁ ନାରୀର ଜନ୍ମ—

ଶତ୍ରୁ —ଚୁପ୍ କର ଦୁଷ୍ଟା—କାମନାରେ ନିଜକୁ ଉତ୍ସର୍ଗ କରି ପୁଣି କଥା କହୁଛୁ—

ପୁଷ୍ପ —ଉତ୍ସର୍ଗ କରିଛି ସତ, କିନ୍ତୁ କାମନାରେ ନୁହେ—ତୁମେତ ଶିଖାଇଛ, ଆତ୍ମୋତ୍ସର୍ଗରେ ନାରୀର ଚରମ ସାର୍ଥକତା—ପ୍ରେମରେ ନାରୀର ପରମ ପରିଣତି ଓ ଅପାର ଆନନ୍ଦ—

ଶତ୍ରୁ —ହା ଦୁର୍ଦ୍ଦୈବ ! ମୋତେ ଆଜ ସ୍ୱୈରିଣୀ ଦେଖି ଜଗତର ଆପଣା ପର ସମସ୍ତେ ଅତ୍ୟାଚାର କରିବାକୁ ଉଦ୍ୟତ । ଏକେ ଏକେ ସବୁ ସରିଥିଲା, କେବଳ ଏହି ବଂଶ ଗରିମାଟିକ ଥିଲା, ତାହା ମୂଳରେ ମଧ୍ୟ କୁଠାରାଘାତ । ( ତରବାରି ମୁଠାଧରିବା ) ତୋର ମୃତ୍ୟୁ

ପୁଷ୍ପ —ମୋର ମୃତ୍ୟୁରେ ଯଦି ଏହି କଳଙ୍କ ଗାଥା ଧୌତ ହୋଇ ପାରିବ ତେବେ ମୁଁ ଘାତୁକର କଳୁଷିତ ଖଡ୍ଗ ପାଖରେ ସୁଦ୍ଧା ବେକ ଦେଖାଇବାକୁ କୁଣ୍ଠିତ ନୁହେ—ମାତ୍ର ମୁଁ ଯେ ଏକା ନୁହେ । ମୋର ସ୍ୱାମୀର ଶେଷ ସ୍ମୃତି ମୋଠାରେ—ନା ପିତା ମୋତେ ଯିବାକୁ ଦିଅ, ତୁମର ନିଷ୍କଳଙ୍କ କୁଳ ଗୌରବ ଅକ୍ଷୁଣ୍ଣ ରହୁ—( ଏକଆଡ଼େ ଅନାଇ ) ଏଇ ମୋର ସ୍ୱାମୀ ମୋତେ ଅଜଣା ରାଜ୍ୟରୁ ଅନାଇ ବସିଛନ୍ତି—ଶୈଶବରୁ ମାତୃହୀନ, ଯୌବନରେ ନିର୍ବାସିତ, ପ୍ରାସାଦବାସୀ ରାଜପୁତ୍ର ଆଜି ପଥର ଯାତ୍ରୀ-ମୁଁ ଯାଉଛି ପିତା—ମୋଠାରୁ ତାଙ୍କ ଦୁଃଖ ସହସ୍ର ଗୁଣ । ମାତୃହୀନା ମୁଁ—ତୁମଠାରୁ ପିତୃ ମାତୃ ସ୍ନେହ ଏକାଧାରରେ ପାଇଆସିଛି—ସେ କେବଳ ପିତୃ ମାତୃ ହୀନ ନୁହନ୍ତି—ସ୍ୱଦେଶ ବହିଷ୍କୃତ, ପିତା, ତୁମର ଏ ଆବାଲ୍ୟ ମାତୃସ୍ନେହ ବଞ୍ଚିତା କନ୍ୟା ଦୁନିଆ ଚକ୍ଷୁରେ ହଜାର କଳଙ୍କିନୀ ହେଲେ ମଧ୍ୟ ଈଶ୍ୱରଙ୍କ ଚକ୍ଷୁରେ ପାପଶୂନ୍ୟା ମୋର ଏ ବିବାହର ଲାଳସା ନାହିଁ ପିତା, ଅଛି ନିର୍ଦ୍ଦୋଷ

ପ୍ରାଣ ବିନିମୟ—କ୍ଷମା ନକରନ୍ତୁ ପଛକେ ଆଶୀର୍ବାଦ କରନ୍ତୁ, ମୁଁ ମୋର ନାରୀଧର୍ମର ଶ୍ରେଷ୍ଠବ୍ରତ ଉଦ୍‌ଯାପନରେ ସକ୍ଷମ ହୁଏ—( କାନ୍ଦି କାନ୍ଦି ) ବିଦାୟ ପିତା—

ଶର୍ଦ୍ଦ —ହା ବିଧାତା ! ଏ ତୋର କି ବିଡମ୍ବନା—କି କଠୋର ପରୀକ୍ଷା —କି ଭୀଷଣ ମର୍ମଦାହ ମଧ୍ୟରେ ତୁ ଅଦ୍ଭୁତ ସ୍ନେହ ରସ ଦେଇ ପିତା ମାତା ସୃଷ୍ଟି କଲୁନି ନା ! ଯା ହେବାର ହେଲାଣି—ମୋର ସବୁ ଗୋଳମାଳ ହୋଇଯାଉଛି—ଆଃ ଅଭାଗିନୀ – ତୋର କିଛି ଦୋଷ ନାହିଁ—ସବୁ ଏ ବୃଦ୍ଧର ଭାଗ୍ୟଲିପି—

ପୁଷ୍ପ —ମୋତେ ବିଦାୟ ଦିଅ ପିତା !

ଶର୍ଦ୍ଦ —ତୋର ସ୍ୱାମୀ ନିର୍ବାସିତ, କୁଆଡ଼େ ଯିବୁ ? ପିତୃ ହୃଦୟ ଛଡ଼ା ତୋର ସ୍ଥାନ ଆଉ କେଉଁଠି ? ମୋରତ ସବୁ ଯାଇଥିଲା, ବାକି ଥିଲା ଜାତିର ଗର୍ବ—ସେ ବି ଯାଉ । ତୁ ଯଦି ତୋର ନିଷ୍ପାପ ଚରିତ୍ର ନେଇ ତୋର ନାରୀଧର୍ମ ପବିତ୍ର ରଖି ତୋର ଅନ୍ତରାତ୍ମା ନିକଟରେ ମୁଣ୍ଡ ଟେକି ରହିପାରୁ ତେବେ ମୋର କୌଣସି ଚିନ୍ତା ନାହିଁ ମା—

ପୁଷ୍ପ —ନାହିଁ ବାବା । ତୁମେ କାହିଁକି ମିଛଟାରେ ତୁମର ମହତ୍ତ୍ୱ ଯଶ କଳଙ୍କିତ କରିବ

ଶର୍ଦ୍ଦ —କଳଙ୍କ କ'ଣ କହୁଛୁ ମା ? ଏ ବୃଦ୍ଧ ଆଉ କେତେ ଦିନ ବଞ୍ଚି ରହିବ ?—ଦେଶ ଲାଗି ଯଥାସର୍ବସ୍ୱ ବିସର୍ଜନ ଦେଇଛି— ଏକେ ଏକେ ମୋର ବଂଶସନ୍ତାନ ରଣକ୍ଷେତ୍ରରେ ଆହୁତି ଦେଇଛି—ଏଥିରେ ଯଦି ଦେଶ ମୋର ଏତିକି ନ ବୁଝେ ତେବେ ସେ ଦେଶ ଧ୍ୱଂସରେ ଯାଉ ମା ମୋର ଶୋଚନା ନାହିଁ—ଦେଶ ସିନା ମୋଠାରୁ ସେବା କର୍ତ୍ତବ୍ୟ ଗୃହେଁ, ସେ କ'ଣ ମୋର ବାତ୍ସଲ୍ୟଧର୍ମ ବିସର୍ଜନ ଦେବାକୁ ଲୋଡ଼ିବ—

ଦେଶର ସନ୍ତାନ ମୁଁ—ସନ୍ତାନର କର୍ତ୍ତବ୍ୟ ଯାହା କରିବ, ତାହା ବୋଲି କ'ଣ ନିଜର ଅପତ୍ୟ ସ୍ନେହ ପାଶୋରି ଦେବ ? କେହି ବିଶ୍ୱାସ କରୁ ବା ନ କରୁ, ସମାଜ ଭଲ କହୁ କି ମନ୍ଦ କହୁ, ସେଥିରେ ମୋର ଭ୍ରୂକ୍ଷେପ ନାହିଁ । ଖାଲି ଭଗବାନଙ୍କ ନିକଟରେ ଆମର ମୁଣ୍ଡ ଟେକି ଠିଆ ହେବା ଶକ୍ତି ଥିଲେ ସବୁଅଛି ମା—

ପୁଷ୍ପ —ବାବା—

ଶିବ —ବଡ଼ ଅବାଧ ତୁ ମା—ବାରମ୍ବାର ସେହି କଥା କହି ମୋତେ କଷ୍ଟ ଦେଉ—ତୁ କାହୁଁ ବୁଝିବୁ ପିତୃସ୍ନେହ କି ଗଭୀର କି ଅସୀମ—ପିତାର ପ୍ରାଣ କି ଉପାଦାନରେ ଗଠିତ । ଦେଖାଇ-ବାର ହେଲେ ଦେଖାଇ ଦିଅନ୍ତି ପିତୃ ହୃଦୟ ସନ୍ତାନ ସନ୍ତତିର କି ଦୁର୍ଭେଦ୍ୟ ଦୁର୍ଗ—କପରି ଅନନ୍ତ ପରି ଅନନ୍ତ ମୁଖୀ; ଚାଲ-ମା—ଆମେ ଆମର ଖଣ୍ଡଗିରି ଦୁର୍ଗରେ ଅକ୍ଷେମ ପାଖରେ ରହିବା—ସେଠି ନିଷ୍ଠୁର ସଂସାରର ନିନ୍ଦାବାଦ ନ ଥିବ—ସେଠାରେ ଆମ୍ଭେ ପିତା ପୁତ୍ରୀ ଦୁହେଁ ନିଜର ସ୍ମୃତି ସମ୍ବଳକରି କାଳ କଟାଇବା—କେହି ଦେଖିବନାହିଁ—କେହି ଶୁଣିବାକୁ ଥିବନାହିଁ—ଉପରେ ବିରାଟ ଗଗନ ତଳେ ଶ୍ୟାମଳାଧରଣୀ, ମଧ୍ୟରେ ସ୍ନିଗ୍ଧ ମଧୁର ପବନ ହିଲ୍ଲୋଳ, ମୁଁ ତୋତେ ସେହିଠାରେ ମୋର ପିଲାକାଳର ଏ ଯୌବନର ଉଚ୍ଛ୍ୱାସ-ମୟ ଯୁଦ୍ଧ କାହାଣୀ ଶୁଣାଇବି—ତୁ ମୋତେ ତୋର ମଧୁର ସଙ୍ଗୀତ ଝଙ୍କାରରେ ଭୁଲାଇ ରଖିବୁ । ଚାଲ ମା—(ପ୍ରସ୍ଥାନ)

## ଷଷ୍ଠ ଦୃଶ୍ୟ

ସ୍ଥାନ—ଖଣ୍ଡଗିରି ନିକଟ ଅରଣ୍ୟ

(ସମସ୍ତ ସୂର୍ଯ୍ୟାସ୍ତ—ଅରଣ୍ୟରେ କ୍ରମ ବର୍ଦ୍ଧମାନ ଅନ୍ଧକାର ତାହାର ନିସ୍ତବ୍ଧତାକୁ ଗୁରୁ ଗମ୍ଭୀର କରି ଦେଇଛି—ନୀଡ଼ ପ୍ରତ୍ୟାଗତ ବିହଙ୍ଗର କାକଳି ମା ମଝେ ମଝେ ଉଠୁଛି, ଶତ୍ରୁଦମନଙ୍କ ପୁତ୍ର ଅରିନ୍ଦମ ଏକାକୀ ବଣ ଭିତରେ ବନ୍ଧୁବାର ଏପାଖ ସେପାଖ ହେଲେ ଏବଂ ନିରକ୍ଷଣ କରି ଯେପରି କାହାକୁ ଖୋଜିଲେ, ତତ୍ପରେ ବାହାର ଗ୍ଲଲିଯିବା ବେଳେ କହିଲେ )

ଅରିନ୍ଦମ—କାହିଁ ଏ ବଣରେ ତ ଏତେ ଖୋଜିଲି କିନ୍ତୁ ପୁଷ୍ପକୁ ପାଇଲି ନାହିଁ, ଗଲା କୁଆଡ଼େ ? ରାଣୀ ଡକାଇଲେ ବୋଲି କେତେବେଳୁ ଘରୁ ଗ୍ଲଲି ଆସିଲା, ଏବେ ସନ୍ଧ୍ୟା ହେଲା ଫେରିଲା ନାହିଁ । ରାଣୀ ତ କହିଲେ ଯେ ଅନେକ ବେଳୁ ଫେରି ଗଲାଣି । କଅଣ ହେଲା କେଜାଣି— ବଣରେ କଅଣ ବାଟ ବଣା ହୋଇଗଲା, ହେଲେ ମଧ ଯିବ କୁଆଡ଼େ ? ଦେଖେ ଆଉ ଥରେ ଡାକେ ମାରେ ପୁଷ୍ପ—ପୁଷ୍ପ – (ପ୍ରତିଧ୍ୱନି) ହିଁ ପ୍ରତ୍ୟୁତ୍ତର ଦେଲା, ହଠାତ୍ ଏ ସମୟରେ ଚିତ୍କାର ଶବ୍ଦ ଶୁଣାଗଲା—ଅରିନ୍ଦମ ଚମକି ପଡ଼ି ଏ କ'ଣ—କାହାର ଏହି ଆକୁଳ ଚିତ୍କାର— ପୁଷ୍ପର ନୁହେ ତ ?—କିଛି ଭୟ ନାହିଁ - (ଶବ୍ଦ ଅନୁସରି ଅରିନ୍ଦମ ଦଉଡ଼ି ଗଲା ଏବଂ ଏକ କୋଣରେ ଲୁଚିଥିବା ପଶୁ ଗ୍ରାମ ମଧ ଅନ୍ୟଆଡ଼େ ପଳାଇଗଲା । ଦୂରରେ ହାତ ଗୋଡ଼ବନ୍ଧା ହୋଇ ଚଞ୍ଚଳା ପଡ଼ିଥିବା ଜାଗାରେ ଅରିନ୍ଦମ ପୁଣି ପହଞ୍ଚି ଚଞ୍ଚଳାକୁ ଦେଖି )

ଅରିନ୍ଦମ—କିଛି ଭୟ ନାହିଁ—କିଏ ତୁମେ—ତୁମର ଏପରି ଅବସ୍ଥା କଲା କିଏ ? ରହ ମୁଁ ଆଗେ ବନ୍ଧନ ଫିଟାଇ ଦିଏ—
[ଅରିନ୍ଦମ ନଇଁପଡ଼ି ବନ୍ଧନ ଫିଟାଇଲା ବେଳେ ଚଞ୍ଚଳା ପୁଣି ଥରେ "ରକ୍ଷାକର ରକ୍ଷାକର" ବୋଲି ଚିତ୍କାର କଲା-ଅରିନ୍ଦମ ବିସ୍ମିତ ହୋଇ ଥମି ଯିବା ବେଳକୁ ଏକଆଡ଼ୁ ସାନୁଚର ରାଜା ରାଣୀ ଶତ୍ରୁଦମନ ଓ ଅନ୍ୟ ଆଡ଼ୁ ପର୍ଶୁରାମ ପ୍ରଭୃତିଙ୍କ ପ୍ରବେଶ)

ରାଜା— ଏ କ'ଣ ?

ଚଞ୍ଚଳା—ଧର୍ମାବତାର ମହିମା—ମୁଁ ମହିମାଙ୍କର କନ୍ୟାତୁଲ୍ୟ—ମୋତେ ରକ୍ଷା କରନ୍ତୁ । ଏ ଯୁବକ ମୋତେ ଏକା ଦେଖି ମୋର ଧର୍ମ ନେଉଥିଲା—ବିଚାର କରନ୍ତୁ ମହିମା—
(ଅରିନ୍ଦମ ଅବାକ୍, ଶତ୍ରୁଦମନ ଘୃଣାରେ ସଙ୍କୁଚିତହେବା)

ରାଜା—କି ଉଚ୍ଛୃଙ୍ଖଳ ଯୁବକ—ବଡ଼ ଆସ୍ପର୍ଦ୍ଧା ତ—ମୁହଁରୁ କଥା ବାହାରୁ ନାହିଁ ।

ଚଞ୍ଚଳା—ବୁଝନ୍ତୁ ମହାରାଜ ।

ଅରିନ୍ଦମ—ଦୂର୍ ପାପିୟସୀ—ଏଇ ଦଣ୍ଡକ ଆଗରେ ମୁ ତୋର ଆକୁଳ ଡାକରେ ସାହାଯ୍ୟ କରିବି ବୋଲି ଧାଇଁ ଆସିଲି—ତୋ ମୁହଁରେ ପୁଣି ଏ କଥା !

ରାଜା—ଚୁପ୍ କର ପାଷଣ୍ଡ—ଅବଳାର ସର୍ବସ୍ୱ ହରଣ କରିବାକୁ ଯାଇ ତାକୁ ଉଦ୍ଧାର କରୁଥିଲୁ—ପାପ ଉପରେ ପାପ—ଦେଖୁଛ ସେନାପତି, ତୁମ୍ଭର କୁଳ ଚନ୍ଦ୍ରମାର କୀର୍ତ୍ତି—

ଶତ୍ରୁ—ହା ବିଧାତା ।

ରାଜା—ଆଉ ବିଧାତା

ଚଞ୍ଚଳା—ମହିମା—ଏ ଅତ୍ୟାଚାରର ଧର୍ମ ବିଚାର କରନ୍ତୁ—

ରାଜା—ହଁ କରିବି—ଦେଖିବ ଯୁବକ, ଶିଳାଦିତ୍ୟ ସାମ୍ରାଜ୍ୟରେ ରମଣୀ ପ୍ରତି ଅତ୍ୟାଚାରୀ କ ଭୀଷଣ ଦଣ୍ଡରେ ଦଣ୍ଡିତ ହୁଏ—

କ'ଣ କହୁଚ ସେନାପତି ? ରକ୍ଷୀ, ଏ ଦୁର୍ବୃତ୍ତକୁ ବନ୍ଧ କରି ନେଇ ଚାଲ ।

ଶତ୍ରୁ—ମହାରାଜ ନ୍ୟାୟ ବିଚାର କରିବେ ।

ଅରିନ୍ଦମ—ବନ୍ଧ କରନ୍ତୁ—ଯେତେ ଇଚ୍ଛା କଠୋର ଶାସ୍ତି ଦିଅନ୍ତୁ, କିନ୍ତୁ ଜାଣନ୍ତୁ ସମ୍ରାଟ ମୁଁ ନିର୍ଦ୍ଦୋଷ । ମୁଁ ମୃତ୍ୟୁକୁ ଭୟ କରେ ନାହିଁ କିମ୍ବା ମିଥ୍ୟା କହି ଆତ୍ମଦୋଷ ଗୋପନ କରିବାକୁ ଶିଖି ନାହିଁ ।

ରାଜା—ଚୁପ୍ କର ବର୍ବର—ଅବଳାକୁ ଏକାକିନୀ ପାଇ ଅତ୍ୟାଚାର କରିବାଟା ଶିଖିଛୁ—ମିଛ କାହିଁକି ଶିଖିବୁ ?

ଅରି—ମହିମା ଦେଶର ରାଜା ଓ ଆମର ଅତିଥି; ନ୍ୟାୟାନ୍ୟାୟ ସତ୍ୟ ମିଥ୍ୟା ବିଚାର କରି ଦୋଷୀକୁ ଦଣ୍ଡ ଦେବେ, ଏ ସବୁ କାହିଁକି କହୁଚନ୍ତି—

ରାଜା—ଏହା ନ କହି କ'ଣ ତୋର ସ୍ତବ ଗାନ କରନ୍ତି । ଅସ୍ପର୍ଦ୍ଧାତ କମ ନୁହେଁ—ଚୁପକର; ନଚେତ୍ ମୋର ରକ୍ଷୀ ତୋତେ ଚିରଦିନ ପାଇଁ ଚୁପ କରି ଦେବ—

ଅରି—ସେ ଭୟ କାହାକୁ ଦେଖାନ୍ତି ସମ୍ରାଟ—ଶତ୍ରୁଦମନର ପୁତ୍ର କେହି ପ୍ରାଣ ରଙ୍କ ନହନ୍ତି । ପିତା—ତୁମ୍ଭେ ବିଚଳିତ ହୋଇ ପଡ଼ିଛ, କିନ୍ତୁ ମୁଁ ନିର୍ଦ୍ଦୋଷ ପିତା; ଏ ଷଡ଼ଯନ୍ତ୍ରର କିଛି ଜାଣେ ନାହିଁ—ବୀର କୁଳରେ ମୋର ଜନ୍ମ, ଜୀବନ ମୋର ହାତେ ହାତେ ସଙ୍ଗେ ସଙ୍ଗେ ବନ୍ଧା, ଏ କଥା ତ ତୁମେ ଶିଖାଇଛ । ବୀର ଚକ୍ଷୁରେ ଆନନ୍ଦାଶ୍ରୁ ଛଡ଼ା ଅନ୍ୟ ଅଶ୍ରୁ ରହିବା ଅବିଧି, ଏକଥା ତୁମ୍ଭେ କହିଛ—ତେବେ ଦୁଃଖ କାହିଁକି ? ମନେକର ଏ ପୁତ୍ର ତୁମ୍ଭର ନ ଥିଲା, ତୁମ୍ଭର ପଦକମଳ ମୋର ମହାତୀର୍ଥ ପିତା—ତାହା ଛୁଇଁ ମୁଁ ଶପଥ କରେ ଯେ ମୁଁ ନିଷ୍ପାପ—(ଭକ୍ତି ର ହୋଇ) କେବଳ ଏକିକ

ନୁହେଁ, ଆଉର ଦୁଃସମ୍ବାଦ ଅଛି । ହୃଦୟକୁ ପାଷାଣରେ ବାନ୍ଧ ଶକ୍ତିପାଅ—ପୁତ୍ରୀ ମଧ୍ୟ ଅପହୃତା—

ଶର — ( ବିକଳରେ ) ଅପହୃତା !

ଅରି —ହଁ ଆଜି ସକାଳୁ ତାକୁ ଖୋଜି ପାଉ ନାହିଁ—ମୋତେ ଆଶିର୍ବାଦ କର, ବୀରର ପୁତ୍ର ମୁଁ ଯେପରି ବୀର ପରି ସୌଭାଗ୍ୟ, ଦୁର୍ଭାଗ୍ୟ ଦୁହିଁଙ୍କୁ ସମାନ ଭାବରେ ଆଲିଙ୍ଗନ କରିପାରେ ।

ରାଜା —ଅଭିନୟ ମନ୍ଦ ନୁହେଁ । ରଷୀ ଜାଡ଼ିକୁ ଫେରି ଚାଲ, ଏପରି ଅଧମର ଅତିଥି ହେବା ଅଧର୍ମ । [ ଚଞ୍ଚଳାକୁ ଅନାଇ ] ତୁମ୍ଭେ ମଧ୍ୟ ସଙ୍ଗରେ ଆସ—( ରାଜା ପ୍ରଭୃତି ସମସ୍ତେ ଅରିନ୍ଦମକୁ ନେଇ ପ୍ରସ୍ଥାନ )

ଶର —(ପଥ ଆଡ଼କୁ ଅନାଇ ଅନାଇ) ନେଇଗଲେ—ଏକ ସଙ୍ଗରେ ପୁତ୍ର କନ୍ୟା ଦୂର ଗଲେ । ଆଜିଠାରୁ ବାପା ଡ଼ାକ ମୋର ବୁଡ଼ିଲା— ଯେଉଁ ଦେଶ ପାଇଁ ସର୍ବସ୍ୱାନ୍ତ ହେଲି; ହୃଦୟର ରକ୍ତବିନ୍ଦୁ ଢ଼ାଳି ଯାର ଗୌରବ ବଢ଼ାଇଲି—ସେ ଦେଶ ସେ ଦେଶବାସୀଙ୍କଠାରୁ ଏହି ପ୍ରତିଦାନ । ନିଷ୍ଠୁର ବିଧାତା ! ଏପରି ମର୍ମନ୍ତୁଦ କାର୍ଯ୍ୟ ତୋର ଅଭିପ୍ରେତ ଥିଲା—ପିତା ପ୍ରାଣରେ ଏତେ ମାୟା, ମମତା, କୋମଳତା ଦେଇ ଗଢ଼ୁ କାହିଁକି ? ନା ଆଉ ଭାବି ପାରୁ ନାହିଁ—ମୁଁ ଉନ୍ମାଦ ହୋଇ ଯାଉଛି—ବିଧାତା—ନା—ବିଧାତା—ନାହିଁ — ବିଧାତା ନାହିଁ—ବିଧାତା ନାହିଁ । [ ବେଗେ ପ୍ରସ୍ଥାନ ]

## ୭ମ ଦୃଶ୍ୟ

### ସ୍ଥାନ—ତକ୍ଷଶୀଳା ଗିରିଦୁର୍ଗ

ପାର୍ବତ୍ୟ ଦୁର୍ଗ—ଶିଖରେ ପତାକା ଉଡ଼ୁଛି । ଦୂରରେ ଶୃଙ୍ଗ ପରେ ଶୃଙ୍ଗ ମେଘାବୃତ ଦେଖା ଯାଉଥାଏ । ସମୟ ସନ୍ଧ୍ୟା—ଦୁର୍ଗର ସିଂହଦ୍ୱାର ସମ୍ମୁଖରେ ଦଳେ ସୈନିକ ପତାକାକୁ ହାତ ବଢ଼ାଇ ଉଚ୍ଚ ହୋଇ ଗୀତ ଗାଉଥିଲେ—ସେମାନଙ୍କ ବଦନ ବୀରତ୍ୱପୂର୍ଣ୍ଣ ସ୍ୱର ସତେଜ ଏବଂ ଚକ୍ଷୁ ଛଳ ଛଳ । ତାଙ୍କର ନେତୃତ୍ୱ କରୁଥିଲେ ଜଣେ ଉଚ୍ଚ ପଦସ୍ଥ ରାଜପୁରୁଷ ଯେ କି ମଗଧର ଦୂତ— ।

( ଗୀତ )

ଆସଭାଇ—ଦେଖ ଦୂରେ ଚାହିଁ
ଉଡ଼ଇ କେତନ ଗଗନେ ।
ଗାଅ ମାତି—ସୁଖେ ଆଜ ଗୀତି
ସ୍ୱଦେଶ ମହିମା ସଘନେ ॥
ରଣକ୍ଷେତ୍ରେ ଯେତେ ଭାଇ—
ବୀର ମୃତ୍ୟୁ ବରି—ଜୟ ଦେଲେ ଆଣି
ମୁଁ ତାଙ୍କ ଲାଗି ସୁଖେ ନେତ୍ର ପାଣି
ବିଜୟ ବାଇଦ ବାଇ ।
ଉଠୁ ଗରଜି ସିନ୍ଧୁ ଅଶନି—ଉଚ୍ଛୁଳି ଯାଉ ତା ପବନେ—
ଫୁଲଇ ସ୍ତୁତି ଘୋଷରେ ନିତି ମଗଧ କୀରତି ଭୁବନେ ॥

(ହଠାତ୍ ଗୀତ ବନ୍ଦ, ଦୁର୍ଗ ଦ୍ୱାର ଫିଟିଗଲା । ଅଶୋକ ଧୀରେ ପାହାଚରୁ ଓହ୍ଲାଇ ଆସିଲେ—ସୈନିକ ମାନେ ପ୍ରଣାମ ଜଣାଇ ବାହୁଡ଼ି ଗଲେ ଏବଂ ଅଶୋକଙ୍କୁ ଦେଖି ପାରି ମଗଧ ଦୂତ ନମସ୍କାର କରି କହିଲେ ।

ଦୂତ —ଜୟ ମଗଧ ପତି ଅଶୋକଙ୍କର ଜୟ—

ଅଶୋକ—( ଆଶ୍ଚର୍ଯ୍ୟ ) ଏ ସବୁ କଅଣ ଦୂତ ? ସମ୍ବାଦ କଣ ?

ଦୂତ—ସମ୍ବାଦ ଗୁରୁତର— ସମ୍ରାଟ ଦେହ ତ୍ୟାଗ କରିଛନ୍ତି-ଆପଣହିଁ ବର୍ତ୍ତମାନ ମଗଧେଶ୍ୱର—ଦୋଷ କ୍ଷମା କରନ୍ତୁ ମହାରାଜ !

ଅଶୋକ —ମୁଁ ମଗଧେଶ୍ୱର—ଜ୍ୟେଷ୍ଠଭ୍ରାତା ଜୀବିତ ଥାଉଁ ଥାଉଁ ସବୁ କନିଷ୍ଠ ମୁଁ —ଏଥର ତୁମ୍ଭଙ୍କୁ କ୍ଷମା କଲି, ଦୂତ କିନ୍ତୁ ଆଉ ଏପରି କହିଲେ ଦଣ୍ଡ ପାଇବୁ ।

ଦୂତ —ସେବକ ସମ୍ବାଦ-ବାହକ ମାତ୍ର —କେବଳ ସ୍ୱର୍ଗୀୟ ସମ୍ରାଟଙ୍କ ଅନ୍ତିମ ଇଚ୍ଛା ଜ୍ଞାପନାର୍ଥ ମନ୍ତ୍ରୀ ମୋତେ ପଠାଇଛନ୍ତି—

ଅଶୋକ—ପିତାଙ୍କର ଏ ଅନ୍ତିମ ଇଚ୍ଛା କାହିଁକି ?

ଦୂତ—ମହାରାଜ ! ଯେଉଁ ଧୈର୍ଯ୍ୟ, ସ୍ଥୈର୍ଯ୍ୟ ଓ ଶୌର୍ଯ୍ୟର ପରାକାଷ୍ଠା ଦେଖାଇ ଦୁର୍ଦ୍ଧର୍ଷ ତକ୍ଷଶୀଳାକୁ ଦମନ କରିଅଛନ୍ତି, ଯେପରି ଛଦ୍ମ ବେଶରେ ଶତ୍ରୁ ଶିବିରରେ ପଶି ସମ୍ବାଦ ସଂଗ୍ରହ କରି ଦୁର୍ଗ ଅଧିକାର କଲେ ତାହା ପାଟଳି ପୁତ୍ରର ଘରେ ଘରେ ଘୋଷିତ ହେଉଛି, ବଡ଼ ବଡ଼ ଯୁଦ୍ଧ ନିପୁଣ ସେନାମାନେ ତଟସ୍ଥ । ସେଥିପାଇଁ ସ୍ୱର୍ଗୀୟ ସମ୍ରାଟ ବେଶ୍ ବୁଝି ପାରିଥିଲେ ଯେ ରାଜ୍ୟ ରକ୍ଷାକରିବାକୁ ହେଲେ, ଆପଣଙ୍କ ପରି କଷ୍ଟ ସହିଷ୍ଣୁ, ନିର୍ଭୀକ କର୍ଣ୍ଣଧାର ଆବଶ୍ୟକ । ତେଣୁ ତାଙ୍କର ସେହି ଅନ୍ତିମ ଇଚ୍ଛା ମନ୍ତ୍ରୀଙ୍କୁ ଏକାନ୍ତରେ ଜଣାଇ ଯାଇଥିଲେ ।

ଅଶୋକ—ଏଥିରେ ତ ଦୂତ ଭ୍ରାତୃ ବିବାଦ ଅବଶ୍ୟମ୍ଭାବୀ—ରାଜ୍ୟ ନେଇ ଭାଇ ଭାଇରେ ଯୁଦ୍ଧ ଏହା ମୋ ବିବେକ ବିରୁଦ୍ଧ । ମୁଁ ଯେପରି ଅଛି ସେହିପରି ଥାଏ—ବଡ଼ ଭାଇ ରାଜା ହୁଅନ୍ତୁ ।

ଦୂତ —ଏ କଥା ଅବଶ୍ୟ ମଣିମାଙ୍କର ମହତ୍ ହୃଦୟର ପରିଚାୟକ- କିନ୍ତୁ ଭାବି ଦେଖନ୍ତୁ ମହାରାଜ, ଏକଆଡ଼େ କେତେ ଜଣ ଭାଇଙ୍କର ସ୍ୱାର୍ଥ, ଅନ୍ୟଆଡ଼େ ବିରାଟ ସାମ୍ରାଜ୍ୟର କୋଟିକୋଟି

ପ୍ରଜା—ପିତାଙ୍କର ଏତେ ଯତ୍ନରେ ବର୍ଦ୍ଧିତ ଏହି ସାମ୍ରାଜ୍ୟରେ ବିଶୃଙ୍ଖଳା ହେଉ—ଦେଶ ସାରା ବିଳାସର ବନ୍ୟା ଖେଳିଯାଉ—ଏହା କ'ଣ ମଣିମାଙ୍କର ବିବେକ ସଙ୍ଗତ ? ଆଉ ସେହି ଭାଇ ଯେ କି ଏହି ତକ୍ଷଶୀଳା ଦମନରେ ଆପଣଙ୍କୁ ପଠାଇଥିଲେ ତାଙ୍କର କି ଅଭିପ୍ରାୟ, ମଣିମାଙ୍କୁ ବୋଧହୁଏ ଅଛପା ନାହିଁ—ମଣିମା ମଗଧକୁ ସ୍ୱାଧୀନ ଶକ୍ତିଶାଳୀ ଦେଖିବାକୁ ଚାହାନ୍ତି କି ରାଜ୍ୟ ଉଚ୍ଛନ୍ନ ଯିବାକୁ ଚାହାନ୍ତି—ମହାରାଜା ଭ୍ରାତୃ ପ୍ରୀତି ଚାହାନ୍ତି କି ରାଜ୍ୟ ରଖିବା ଦ୍ୱାରା ପିତୃଭକ୍ତି ଦେଖାଇବାକୁ ଚାହାନ୍ତି—

ଅଶୋକ—ମୋତେ ଚିନ୍ତା କରିବାକୁ ଅବସର ଦିଅ—ତୁମ୍ଭର ବାକ୍ୟ ପ୍ରଲୋଭନମୟ ।

ଦୂତ—ଆଉ ଅବସର ନାହିଁ ମହାରାଜ, ରାଜ୍ୟ ବର୍ତ୍ତମାନ ଅରାଜକ—ସମୟ ଓ ସୁଯୋଗ ଅଛି—ଗଣ୍ଡଗୋଳ ହେଲେ ସେନା-ସେନାନି ସମସ୍ତେ ମଣିମାଙ୍କ ଜୟ ପତାକା ତଳେ ଛିଡ଼ା ହେବାକୁ ପ୍ରସ୍ତୁତ—ଆପଣ କାଳ ବିଳମ୍ବ ନ କରି ପାଟଳୀପୁର ଯାତ୍ରା କରନ୍ତୁ—

ଅଶୋକ—କିନ୍ତୁ—

ଦୂତ—ଆଉ ଇତସ୍ତତ କରନ୍ତୁ ନାହିଁ ମହାରାଜ—ରାଜ୍ୟ ନିମିତ୍ତ ଏ ଭାର ମଣିମାଙ୍କୁ ବୋହିବାକୁ ପଡ଼ିବ—ଜାତିର ମଙ୍ଗଳ ଚେଷ୍ଟାରେ ନିଜତ୍ୱକୁ ବଳି ଦିଅନ୍ତୁ ।

ଅଶୋକ—ଏ ସମ୍ବାଦ ଏତେ ଆକସ୍ମିକ ଓ ଅପ୍ରତ୍ୟାଶିତ ଯେ ଏହାର ଦାୟିତ୍ୱ, ବିନା ଚିନ୍ତାରେ ମୁଁ ଗ୍ରହଣ କରିବାକୁ ଅକ୍ଷମ—ମୋତେ କର୍ତ୍ତବ୍ୟ ସ୍ଥିର କରିବାକୁ ସମୟ ଦିଅ—

ଦୂତ—ମଣିମା ! ପ୍ରତ୍ୟୁତ୍ପନ୍ନମତି—କାର୍ଯ୍ୟ କ୍ଷେତ୍ରରେ କର୍ତ୍ତବ୍ୟ ଆପଣା ଛାଏଁ ସ୍ଥିର ହୋଇଯିବ—ରାଜ୍ୟ ବର୍ତ୍ତମାନ ଅରାଜକ—

ସମାଜ ଶୃଙ୍ଖଳା ବିହୀନ—ଏହାତ ଉପେକ୍ଷା କରିବାର ନୁହେଁ ବରଂ ମନ୍ତ୍ରୀମାଙ୍କର ବୀର ପ୍ରତିଭା ଦେଶ ହୃଦୟରେ ଆଶାର ସଞ୍ଚାର କରିବ—ଆଗେ ଦେଶ ରକ୍ଷା କରନ୍ତୁ—ପରେ କର୍ତ୍ତବ୍ୟ ଚିନ୍ତା କରିବେ—

ଅଶୋକ—ଆଉ ଭାଇମାନେ ମୋର—

ଦୂତ—ତାଙ୍କ ସମ୍ବନ୍ଧ ଅବସ୍ଥା ଦେଖି ବ୍ୟବସ୍ଥା କରିବେ—ସେଥିରେ ମନ୍ତ୍ରୀମାଙ୍କର ନିନ୍ଦା ନ ହୋଇ ବରଂ କର୍ତ୍ତବ୍ୟ ପରାୟଣତାର ଭୂରି ଭୂରି ସାଧୁବାଦ ଉଠିବ—

ଅଶୋକ—ଆଚ୍ଛା ବେଶ୍—ମୁଁ ତୁମ୍ଭର ପ୍ରସ୍ତାବ ଗ୍ରହଣ କଲି । ଯେତେ ଶୀଘ୍ର ପାରେ ମୁଁ ମଗଧ ଯାତ୍ରା କରିବି କିନ୍ତୁ ମନେ ରଖ ଦୂତ, ଏହି କଠୋର ଦାୟିତ୍ୱ ସମ୍ମୁଖରେ ପିତାଙ୍କର ଇଚ୍ଛା ପାଳିବାକୁ ଯାଇ ସାମ୍ରାଜ୍ୟ ଓ କର୍ତ୍ତବ୍ୟ ଛାଡ଼ି ଯଦି ଆଉ କିଛି ସଦ୍‌ବୃତ୍ତି ମୋ ମନରେ ସଜୀବ ନ ଥାଏ ତେବେ ସେ ଦୋଷ ମୋର ନୁହେ ତୁମର ତୁମ ଜାତିର ଏବଂ ଦେଶର । ଆସ ଦୂତ, ମୁଁ ଯାତ୍ରାର ଆୟୋଜନ କରିବାକୁ ଆଦେଶ ଦିଏ ।

ଦୂତ—ଯଥା ଆଜ୍ଞା ମହାରାଜ । [ପ୍ରସ୍ଥାନ]

ନିରଞ୍ଜନା ନଦୀ ତଟସ୍ଥ ଆଶ୍ରମ

(ସମ୍ମୁଖରେ କ୍ଷୁଦ୍ର ତଟିନୀ—କୂଳରେ ବଟ ବୃକ୍ଷଟିଏ—ବୃକ୍ଷ ମୂଳେ ଏକ ପଥର ଉପରେ ହଳଦିଆ ଅଙ୍ଗରଖା ପିନ୍ଧି ଜଣେ ମୁଣ୍ଡିତଶିର ତରୁଣ ସନ୍ନ୍ୟାସୀ ବସିଛି—ଦିଗ୍‌ବଳୟ ତଳେ ଡୁବିଥିବା ରବିର କ୍ଷୀଣ କିରଣ ସ୍ଥାନଟିକୁ ଗାମ୍ଭୀର୍ଯ୍ୟ ପୂର୍ଣ୍ଣ କରିଛି—ସନ୍ନ୍ୟାସୀର ବଦନ ଭଙ୍ଗିରେ ଆୟାସ ସାଧ୍ୟ କଳ୍ପିତ ସଂଯମର ଆଭାସ—ସ୍ଥାନଟି ଉତ୍କଳର ଉତ୍ତର ପ୍ରାନ୍ତ—)

ସନ୍ନ୍ୟାସୀ—ଭାଗ୍ୟର କି ଆଶ୍ଚର୍ଯ୍ୟ ପରିବର୍ତ୍ତନ । କାହିଁ ସିଂହାସନ ଲାଗି ଘାତ ବିବାଦ—ଆଉ କାହିଁ ସୁକଠୋର ଏହି ସନ୍ନ୍ୟାସବ୍ରତ ଆଚରଣ । ଦୁଇ ବର୍ଷରୁ ଅଧିକ ହେଲା ଦୀକ୍ଷା ଗ୍ରହଣ କରିଛି—କେହି ନୁହେଁ—କିଛି ନୁହେଁ—ମନରେ ନିତିନା ଆବୃତ୍ତି କରୁଛି—ଗୁରୁ ଆନନ୍ଦ ମୋତେ ଭଗବାନ ଶାକ୍ୟ-ସିଂହଙ୍କର ଦୀକ୍ଷା ଦେଲାବେଳେ କହିଲେ: ଉପଯୁକ୍ତ, ତୁମ୍ଭ ଦ୍ୱାରା କଳିଙ୍ଗରେ ସତ୍ୟ ଧର୍ମର ପ୍ରଚାର ହେବ । ସେହି ଦିନୁ ଏହି କଳିଙ୍ଗ ସୀମା ନିକଟରେ ରହିଛି—କିନ୍ତୁ କଠୋର ସାଧନା ଭିତରେ ପୁଣି କାହିଁକି ଏହି ଦୁର୍ବଳତା—ପୁଣି କାହିଁକି ଆସକ୍ତି ମମତାର ବନ୍ଧନ ମୋତେ ବିଚଳିତ କରୁଛି—ନା ନା—ଏହା ଠିକ ନୁହେଁ—ମୁଁ ଅନାସକ୍ତ ଯୋଗୀ—ମନ ସ୍ଥିର ରହ—ହୃଦୟ ଧୈର୍ଯ୍ୟଧର—ଦୟାମୟ ମୋର କର୍ତ୍ତବ୍ୟ ପଥରେ ସହାୟ ହୁଅ—ମୁଁ ଯେମିତି ଅଶାନ୍ତକୁ ନିଶେଷରେ ପାଶୋରି ପାରେ । ହଠାତ୍ ଦୂରରୁ ପବନରେ ଭାସି ଆସିଲା କରୁଣ ସ୍ୱର, କିଏ ଅଛ—ଅନାଥିନୀକୁ ଟିକିଏ ଆଶ୍ରୟ ଦେବ (କାନପାତି)କାହାର ଏ କରୁଣ ସ୍ୱର—ଦୂରକୁ ଅନାଇ ରହି ଦେଖିଲେ ଜଣେ ଜୀର୍ଣ୍ଣବସ୍ତ୍ରାବୃତ ତରୁଣୀ ନିତାନ୍ତ ଦୁର୍ବଳ ପଦରେ ଆସୁଛି—କୋଳରେ ବର୍ଷକର ଶିଶୁଟିଏ) ଏ କ'ଣ ? କିଏ ଏହି ଅସହାୟା ତରୁଣୀ ? ବକ୍ଷରେ ଶିଶୁ ? ମୋ ମନଟା ଏପରି ବ୍ୟାକୁଳ ହେଉଛି କାହିଁକି ? ସଂସାର-ତ୍ୟାଗୀ ସନ୍ନ୍ୟାସୀ ମୁଁ ମୋର ପୁଣି ।

ରମଣୀ—(କମ୍ପିତ ପଦ କ୍ଷେପରେ ପ୍ରବେଶ, ଦୃଷ୍ଟି ବିଭ୍ରାନ୍ତ) ଦୁଃଖିନୀ ଅଭାଗିନୀ ମୁଁ—ମୋତେ ଟିକିଏ ଆଶ୍ରୟ ଦେବ—ସନ୍ନ୍ୟାସୀ ।

ସନ୍ନ୍ୟାସୀ—(ସ୍ୱଗତଃ )କଣ୍ଠ ସ୍ୱର ତ ବଡ଼ ପରିଚିତ—ତାହାର ମୁଖ ଦିଶିଯାଉଛି—ହୃଦୟ ଦମ୍ଭଧର—(ପ୍ରକାଶ୍ୟେ) କୌଣସି ଭୟ ନାହିଁ ଦେବୀ ! ତୁମ୍ଭେ ନିଶ୍ଚିନ୍ତ ମନରେ ଏଠାରେ ଆଶ୍ରୟ ଗ୍ରହଣ କର—( ରମଣୀକୁ ବସିବାକୁ ସଙ୍କେତ କରିବା ) ନିରାଶ୍ରୟଙ୍କୁ ଆଶ୍ରୟ ଦେବା ତ ସନ୍ନ୍ୟାସୀର ଶ୍ରେଷ୍ଠ କର୍ମ ।

ରମଣୀ—(ଶ୍ରାନ୍ତ ଭାବରେ ତଳେ ବସି) ନିଷ୍ଠୁର—ନିର୍ମମ – ସଂସାରର କଠୋର ତାଡ଼ନାରେ ପଡ଼ି ଆତ୍ମୀୟ ସ୍ୱଜନ, ଗୃହ, ଦେଶତ୍ୟାଗିନୀ ହୋଇ ପଥର ଭିକାରୁଣୀ ହୋଇଛି—ମୋ ଲାଗି ମୁଁ ବ୍ୟାକୁଳ ନୁହେ ସନ୍ନ୍ୟାସୀ—ଏହି ଶିଶୁଟିକୁ ମୋର ଆଶ୍ରୟ ଦିଅ—ମୋର ନିରୁଦ୍ଦିଷ୍ଟ ସ୍ୱାମୀଙ୍କର ଏହା ଶେଷ ସ୍ମୃତି—ମୁଁ ତ ମୃତ୍ୟୁ ପଥର ପଥିକା ।

ସନ୍ନ୍ୟା—ନିଶ୍ଚିନ୍ତ ହୁଅ ଦେବୀ—ତୁମ୍ଭେ ଲୋଡ଼ିବା ଆଗରୁ ମୁଁ ସେ ଭାର ନେଉଛି—ତୁମ୍ଭର ପରିଚୟ ପାଇ ପାରେକି ଦେବୀ ?

ରମଣୀ—ଦୁଃଖିନୀର ପରିଚୟ ଶୁଣିବ ପ୍ରଭୁ ! ମୋଠାରୁ ବଳି ଅଭାଗିନୀ ସଂସାରରେ ଆଉ କେହି ନାହିଁ । ଉତ୍କଳର ସେନାପତି ଶତ୍ରୁଦମନଙ୍କର କନ୍ୟା ମୁଁ—କୁମାର ମାୟାଦିତ୍ୟଙ୍କର ପତ୍ନୀ—ସ୍ୱାମୀ ମୋର ରାଜାଜ୍ଞାରେ ରାଜ୍ୟରୁ ନିର୍ବାସିତ—ଗଲାବେଳେ ମୋତେ ସଙ୍ଗରେ ନେବା ପାଇଁ କେତେ ଡାକିଥିଲେ—କିନ୍ତୁ ଗୃହରେ ବୃଦ୍ଧ ପିତାଙ୍କର କେହି ଆଶ୍ରୟ ନ ଥିବାରୁ ତାଙ୍କର ଶୁଶ୍ରୂଷା କରିବାପାଇଁ ଗୃହରେ ରହିଲି-ପରେ ରାଣୀଙ୍କର ଚକ୍ରାନ୍ତରେ ପଡ଼ି ହେଲି ଦେଶତ୍ୟାଗିନୀ—ପିଶାଚଙ୍କ କବଳରୁ ପଳାଇ ଆସିଥିଲି—ପଥ ମଧ୍ୟରେ ଏ ଶିଶୁଟି ଜନ୍ମ ହେଲା—ବହୁ କଷ୍ଟରେ ପାଳୁଛି । (ଚିନ୍ତାନ୍ୱିତା)

ସନ୍ନ୍ୟାସୀ—ହଁ ତା ପରେ - କହୁଁ କହୁଁ ବନ୍ଦ ହେଲ କାହିଁକ ? କ ଚନ୍ତା କରୁଛ ? [ଚକ୍ଷୁ ଛଳ ଛଳ ହେଲା]

ରମଣୀ—ଏ କଣ ? ଭୁ ତ ଚକ୍ଷୁ ଯେ ଲୋତକରେ ପୂର୍ଣ୍ଣ ହୋଇ ଉଠିଛି – ଅଭାଗିନୀର ଦୁଃଖ ଶ୍ରବଣ କରି ଦୁଃଖ ଲାଗୁଛି ସନ୍ନ୍ୟାସୀ

ସନ୍ନ୍ୟାସୀ ଏ ଦୁଃଖକାହାଣୀ ଶୁଣିବାରେ ପାଷାଣ ଯେତେବେଳ ଜଳିବ ଦେଖ।

ରମଣୀ– (ସ୍ୱଗତଃ ଏ ଯେ ଅତି ପରିଚିତ—ସେହି ସ୍ନେହ ବୋଳା କଣ୍ଠସ୍ୱର ପରି—ଜଣାଯାଉଛି— ଦସ୍ୟୁମସ୍ତ ! ଆଉ ତ ବେଶୀ ସମୟ ନାହିଁ—ଏହି ସମୟରେ ଯଦ—(ପ୍ରକାଶ୍ୟେ ବ୍ୟଗ୍ର) ସନ୍ନ୍ୟାସୀ—ସତ୍ୟ କୁହ ତୁମ୍ଭ ଗୃହ କେଉଁଠାରେ ଥିଲା— ତୁମ୍ଭର କ'ଣ ପିତାମାତା ନ ଥିଲେ—ସ୍ତ୍ରୀ ନ ଥିଲେ—

ସନ୍ନ୍ୟାସୀ—(ସ୍ୱଗତଃ) କର୍ତ୍ତବ୍ୟର ଅତି କଠୋର ପରୀକ୍ଷା—(ଦୀର୍ଘ-ନିଶ୍ୱାସ ପକାଇ ) ନ ଥିଲେ, କାହିଁକ ? ସମସ୍ତେ ଅଛନ୍ତି କନ୍ତୁ ମୁଁ ସନ୍ନ୍ୟାସୀ—

ରମଣୀ—ମୋର ଦେହ ଅବଶ ହୋଇ ଆସୁଛି—ଏ ଶିଶୁଟିକ ଟିକଏ ଧର ସନ୍ନ୍ୟାସୀ !

[ସନ୍ନ୍ୟାସୀ ଶିଶୁକୁ ନେବା ଓ ଅତି କରୁଣଭାବରେ ଶିଶୁକୁ ଅନାଇବା]

ସନ୍ନ୍ୟାସୀ—(ସ୍ୱଗତଃ) ନା, ହୃଦୟର ଧୈର୍ଯ୍ୟଭଙ୍ଗ ହୁଛି—ଆଉ ପାରୁନାହିଁ

ରମଣୀ—(କଷ୍ଟରେ) ସନ୍ନ୍ୟାସୀ—ମୋରଶେଷସମୟଉପସ୍ଥିତ-ଏତିକ କହିଯାଏ—ପଥରେ ଆସିଲାବେଳେ କେତେଗୁଡ଼ିଏ ଅବଧୂତ ଏହାକୁ ଆଶୀର୍ବାଦ କରି କହିଥିଲେ ଯେ; ଏ ଦିଗ୍‌ବିଜୟୀ ବୀର ହେବ—କଳିଙ୍ଗର ଏକଚ୍ଛତ୍ର ସମ୍ରାଟ ହେବ—ବଂଶ ଗରିମାର ସମ୍ବଳ ଏହାକୁ ମୁଁ ଆଉ କଛି ଦେଇ ପାରୁନାହିଁ। କେବଳ ମୋର ପିତୃବଂଶର ଲୌକିକ ପ୍ରଥା ଅନୁସାରେ ଏହାର ନାମ ବୀର ରଖିବ—(ଧୀରେ ଧୀରେ ଭୂମି ଉପରେ

ଶୟନ ) ଓଃ—ଏତେବେଳେ ଯେବେ ଥରେ ସ୍ୱାମୀଙ୍କର
ଦେଖା ପାଇଥାନ୍ତି—[ ରମଣୀ ଚକ୍ଷୁ ବୁଜିଲେ ]
ସନ୍ନ୍ୟାସୀ—[ସସବ୍ୟସ୍ତେ ପୁଷ୍ପର ମସ୍ତକ କୋଳରେ ଧରି] ପୁଷ୍ପ ! ପୁଷ୍ପ
ଚାହିଁ ଦେଖ, ମୁଁ ଯେ ତୁମ୍ଭର ସେହି ମାୟାଦିତ୍ୟ—
(ଦୂରରୁ କରୁଣ ବିଦାୟ ସଙ୍ଗୀତର ସ୍ୱର)

[ ପ ଟ ପ ରି ବ ର୍ତ୍ତ ନ ]

ଷଷ୍ଠ ଦୃଶ୍ୟ

( କଳିଙ୍ଗ ଦରବାର—ରାଜା ଓ ସଭାସଦବୃନ୍ଦଙ୍କ ସମ୍ମୁଖରେ )
ନର୍ତ୍ତକୀମାନଙ୍କର ଗୀତ ଓ ନୃତ୍ୟ :—

ଆଜି ଗାଆ ଲୋ ସଙ୍ଗାତ ମଙ୍ଗଳ ସଙ୍ଗୀତ—
ନାଚ ନାଚ ତାଳେ ହରଷେ,
ଦେଖ ଅନୁପମ ସାଜିଛି ଭୁବନ—
ଗଗନୁ ସୁଧା କି ବରଷେ ।
ଉଇଁ ଉଇଁ ଆସୁଛି ନିଶୀଥ ମଥାମଣି—
ଛୁଇଁ ଛୁଇଁ ଦଶଦିଶ, ସତେକି ହୀରାଖଣି ।
ନୀଳ ନଭେ କୋଟି କୋଟି ସୁନା ଦୀପ ଯାଏ ଫୁଟି—
ବିଶ୍ୱ ଶୋଭା ପଡ଼ୁଛି ଲୁଟି ।
କୁସୁମିତ ଉପବନ ମନ୍ଦ ବହେ ସମୀରଣ—
କଳଗୀତି କୋକିଳର ହରୁଅଛି ମନପ୍ରାଣ,
ମୁଖରିତ ପୁଷ୍ପ ସୁଧାସିନ୍ଧୁ ଭରି—
ସନ୍ତରେ ସୁଷମା ସରସେ ॥

ଦେଖ ଏ କଳିଙ୍ଗ ଅବସ୍ଥା ପ୍ରତି—
ରାଜ ସିଂହାସନେ ପାଳନ୍ତି କ୍ଷିତି,
ମରତେ ସରଗ ପଡ଼ିଅଛି ଖସି—
ତାଙ୍କରି ଗୁଣ ଦରଶେ ॥

ରାଜା—ପ୍ରହରୀ ବନ୍ଦୀକୁ ନେଇ ଆସ ଓ ସେନାପତିଙ୍କୁ ଆସିବାକୁ କହ । [ପ୍ରହରୀର ପ୍ରସ୍ଥାନ]
ଯାଅ ନର୍ତ୍ତକୀମାନେ; ମୁଁ ତୁମ ନୃତ୍ୟ ଗୀତରେ ବଡ଼ ପ୍ରୀତ ହେଲି, ସେଥି ପାଇଁ ଏହାର ପୁରସ୍କାର ପରେ ଦେବି ।
(ନର୍ତ୍ତକୀମାନଙ୍କର ପ୍ରସ୍ଥାନ; ରକ୍ଷୀ ବନ୍ଦୀକୁ ନେଇ ପ୍ରବେଶ ଓ ସେନାପତି ମଧ୍ୟ ତାଙ୍କ ପଛେ ପଛେ ପ୍ରବେଶ )
ଜାଣିଛତ ସଭାସଦ୍ ଏ ପାଷଣ୍ଡର ରାକ୍ଷସୀୟ କାଣ୍ଡ । ମୁଁ ନିଜେ ତାଙ୍କ ଘରେ ଅତିଥି, ଅଥଚ ଟିକିଏ ଭୟ ନାହିଁ, ଅବଳାର ଧର୍ମ ନେଉଥିଲା—ରାଣୀ ଏବଂ ମୁଁ, ତାହାର ସାକ୍ଷାତ ଦ୍ରଷ୍ଟା—କୁହ ଏ କି ଦଣ୍ଡର ଯୋଗ୍ୟ ।

ସଭାସଦ୍—ମହିମା ରାଜ୍ୟର ନିୟମାନୁସାରେ ତାହାର ଏକମାତ୍ର ଶାସ୍ତି ହେଉଛି ପ୍ରାଣଦଣ୍ଡ ।

୨ୟ ସଭାସଦ୍—ପ୍ରାଣଦଣ୍ଡ ମହାରାଜ ! ପ୍ରାଣଦଣ୍ଡ ।

ରାଜା—ବେଶ ତାହାହିଁ ହେଉ । ବନ୍ଦୀର ଆଉ କିଛି କହିବାର ଅଛି ?

ଅରିନ୍ଦମ—ଆଉ କ'ଣ କହିବି ସମ୍ରାଟ । ସମଗ୍ର ଜଗତ ମୋର ନିନ୍ଦାବାଦ୍ କରିପାରେ । ମୋତେ ଦୋଷୀ ଭାବିପାରେ—କିନ୍ତୁ ମହାରାଜ ! ମୁଁ ନିର୍ଦ୍ଦୋଷ—ମୁଁ ଏ ବ୍ୟାପାରରେ ସମ୍ପୂର୍ଣ୍ଣ ନିର୍ଲିପ୍ତ । ଆଜି ଘଟଣା ଚକ୍ରର

ବିରୁଦ୍ଧ ସମାବେଶ ଏବଂ ଶତ୍ରୁର ଷଡ଼ଯନ୍ତ୍ର ମୋତେ ସହସ୍ର ପ୍ରକାର ଦୋଷୀ ପ୍ରତିପନ୍ନ କଲେ ମଧ୍ୟ କହିବି ମୁଁ ନିର୍ଦ୍ଦୋଷ । ଦଣ୍ଡ ନିମିତ୍ତ ଦୁଃଖ ହେଉ ନାହିଁ ମହାରାଜ, ଦୁଃଖ ହେଉଛି ନିର୍ଦ୍ଦୋଷର ଶାସ୍ତିରେ ଜଣକର ଭଗବତ୍ ବିଶ୍ୱାସ ତୁଟି ଯାଉଛି ବୋଲି—

ରାଜା—କ'ଣ ଶୁଣୁଛ ରକ୍ଷୀ—ନେଇ ଯାଅ—ଏହାର ଆସ୍ପର୍ଦ୍ଧା ଅସହ୍ୟ ।

ଶତ୍ରୁ—[ ଠିଆ ହୋଇ ] ଟିକିଏ ଅପେକ୍ଷା କରନ୍ତୁ—ମହାମହିମମୟ ସମ୍ରାଟ ! ମୋର ଏହି ପକ୍ୱକେଶ, ଗଳିତ ଦନ୍ତ ଓ ଲୋଳିତ ଚର୍ମ ଆଡ଼କୁ ଥରେ ଅନାନ୍ତୁ । ଥରେ ମନେ ପକାନ୍ତୁ—ଏହି ଦେଶ ପାଇଁ ମୁଁ କ'ଣ ନ କରିଛି—ଶରୀରର ପ୍ରତ୍ୟେକ ରକ୍ତ ବିନ୍ଦୁ ଅକାତରରେ ଢାଳି ଦେଇଛି । ୨୦ଟି ବୀର ସନ୍ତାନକୁ ରଣକ୍ଷେତ୍ରରେ ଶୁଆଇ ଆସିଛି—କେବେ ଦୁଃଖ କରି ନାହିଁ କିଛି ପ୍ରତିଦାନ ମାଗି ନାହିଁ—( କୃତାଞ୍ଜଳି ପୂର୍ବରେ ) କ୍ଷମା କରନ୍ତୁ ମହାରାଜ—ମୋର ଏ ଅବୋଧ ଶିଶୁ ପୁତ୍ରକୁ କ୍ଷମା କରନ୍ତୁ—ମୁଁ ତାକୁ ନେଇ ଚାଲିଯାଏ । ପ୍ରତିଜ୍ଞା କରୁଛି ଆଉ ଏ ଜୀବନରେ କଳିଙ୍ଗର ତ୍ରିସୀମା ମଧ୍ୟକୁ ଆସିବି ନାହିଁ ।

ରାଜା—[ଚିନ୍ତିତ ହୋଇ ] କଳିଙ୍ଗରୁ ଚାଲିଯିବ—କେବେ ଫେରିବ ନାହିଁ—ପ୍ରତିଜ୍ଞା କରୁଛ ।

ଶତ୍ରୁ—ହଁ ମହାରାଜ ।

ରାଜା—ରକ୍ଷୀ ତା ହେଲେ ମୁକ୍ତ କରିଦିଅ ।

ଅରିନ୍ଦମ—ନାହିଁ ପିତା—ଏପରି ଜୀବନ ଅପେକ୍ଷା ମୃତ୍ୟୁ ଶତଗୁଣ ଶ୍ରେୟସ୍କର ।

[ ହଠାତ ରାଣୀଙ୍କର ପ୍ରବେଶ ]

ରାଣୀ—ରାଜା କ୍ଷମା କରି ପାରନ୍ତି କିନ୍ତୁ ରାଣୀ ମୁଁ—କଳିଙ୍ଗ ପ୍ରଜା ପୁଞ୍ଜର ଜନନୀ ମୁଁ—କନ୍ୟାର ଧର୍ମ ନଷ୍ଟକାରୀଙ୍କୁ କ୍ଷମା କରି ପାରିବି ନାହିଁ। ବିଗ୍ରହରେ ଏ କି କାରୁଣ୍ୟ ମହାରାଜ ! ଏ ଯଦି ମୋର ନିଜର ଗର୍ଭଜାତ ସନ୍ତାନ ହୋଇଥାନ୍ତା ତେବେ ମଧ୍ୟ ମୁଁ ତାକୁ ଏହାଠାରୁ ଅଧିକତର ଶାସ୍ତି ଦିଅନ୍ତି।

[ପ୍ରହରୀକୁ ପୁଣି ବନ୍ଧନ କରି ବନ୍ଦୀକୁ ନେଇ ଯିବାକୁ ଇଙ୍ଗିତ କଲେ ଓ ପ୍ରହରି ବନ୍ଦୀକୁ ନେଇ ଗଲାପରେ ରାଜା ସିଂହାସନରୁ ଓହ୍ଲାଇ ଆସି ରାଣୀଙ୍କ ହାତଧରି ଭିତରକୁ ନେଇ ଚାଲିଗଲେ]

[ ରାଜାଙ୍କ ପରେ ଅନ୍ୟ ସଭାସଦ ମଧ୍ୟ ଚାଲିଗଲେ ]

ଶତ୍ରୁ—ଏଇଆ ହେଲା—ଜଣେ କେହି ପଦେ ସହାନୁଭୂତି କଥା କହିଲା ନାହିଁ—କୃତଘ୍ନ ରାଜା—କୃତଘ୍ନ ଦେଶବାସୀ—ଶତ୍ରୁଦମନର ଆଜୀବନ ଦେଶ ସେବାର ଏହି ହେଲା ପରିଣାମ—ଖାଲି ଗୁଡ଼ାଏ ସ୍ୱାର୍ଥପର ହିଂସ୍ର ପଶୁ—ବିଧାତା ଏଇ ଲୀଳା ତୋର—ଓଃ [ ପରଶୁରାମର ପ୍ରବେଶ ]

ପର୍ଶୁ—ସେନାପତି !

ଶତ୍ରୁ—କଅଣ—ଆଉ କ'ଣ ବାକି ଅଛି—ଏ ବୃଦ୍ଧର ପ୍ରାଣ—

ପର୍ଶୁ—ନେ..ତେ ..ହିଁ ..ୋଷ ଦେଉଛନ୍ତି—ମୁଁ ତମକୁ ଶୁଭ—ସମ୍ବାଦ ଦେବ ..ବ..ଲ. ଆସିଛି।

ଶତ୍ରୁ—ଆଉ ଶୁଭସମ୍ବାଦ—ଶୁଭସମ୍ବାଦ—ଶୁଭସମ୍ବାଦ—କଅଣ ଶୁଣେ

ପର୍ଶୁ—ରାଣୀଙ୍କର ଆ..ଙ୍କ ଉ..ର ଅସୀମ ଦୟା—ସେ କହି ପଠାଇ-ଛନ୍ତି ତୁମ ଯଦି ତୁମର ..ଷ.. ହସ୍ତ କାଟିଦେବ, ତୁମ ପୁତ୍ରର ପ୍ରାଣଦଣ୍ଡ ରହିତ କରା ହେବ।

ଶତ୍ରୁ—କ'ଣ କହୁଛ ଯୁବକ ? ଏ କ'ଣ ସତ୍ୟ ( ଆନନ୍ଦରେ )
ତୁମେ ମୋର ମଲା ଦେହରେ ଜୀବନ ଦେଲ—ତୁମର
ଉପକାର ମୁଁ ସୁଝି ପାରିବି ନାହିଁ ହାତ କଥା କଅଣ—
ଜୀବନ ଦେଲେ ଯଦି ମୋର ପୁଅ କ୍ଷମା ପାଏ ତାଇ ଦେଉଛି
ନିଅ - ଆସ ଯୁବକ ଥରେ ହାତ ଆଉଁ ୨ ତୁମକୁ ଆଲିଙ୍ଗନ
କରି ନିଏ । ରହ ମୁଁ ହାତକାଟି ଦେଉଛି ( ପ୍ରସ୍ଥାନ )

ପର୍ଶୁ—[ ସ୍ୱଗତ ] ବେଶ୍ ହୋଇଛି ଏକା ଢେଲକେ ଦୁଇ ପକ୍ଷୀ
ମରିବା, କଥାରେ ଅଛି ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ—ବୁଢ଼ା ବଂଶ
ନିର୍ବଂଶ ହେଲା ଆମର ମଧ୍ୟ ପ୍ରତିହିଂସା ନିଆହେଲା । ଅନଙ୍ଗ
ମଞ୍ଜରୀ ନ ହେଲେ ଏପରି ବୁଦ୍ଧି ମୋ ମୁଣ୍ଡରେ ପଶନ୍ତା ନାହିଁ,
ଥିଲି ଏକ ସ୍ୱାଧୀନ ରାଜପୁତ୍ର, ହେଲି ଶତ୍ରୁ ଗୃହରେ ବନ୍ଦୀ ।
ସଙ୍ଗଦୋଷରୁ ସବୁ ହରାଇଥିଲି କିନ୍ତୁ ଏକ୍ଷଣି ଖାଲି ଧପା—
ଧପ ଉଠିପଡ଼ୁଛି—ସାବାସ୍ ମୋ ଭଉଣୀର ବୁଦ୍ଧି । (ଦୂରରୁ
ଦେଖି ଏହି ବୁଢା ତାର କଟା ହାତ ନେଇ ଆସିଲାଣି ।

ଶତ୍ରୁ--(ପ୍ରବେଶ କରି ନିଜର କଟା ହାତ ଧରି)ଏଇ ନିଅ ବୁଢ଼ାର
କଟା ହାତ- -କାହିଁ ମୋ ପୁଅ ଦିଅ ।
( ରାଣୀର କଟାମୁଣ୍ଡ ଧରି ବେଗେ ପ୍ରବେଶ )

ରାଣୀ--ଏଇ ନିଅ ତୁମର ପୁଅ ( ମୁଣ୍ଡ ଦେବା )

ଶତ୍ରୁ—[ ଚମକି ] ଇଏ କଅଣ ?

ରାଣୀ—ବିଜୟନଗର ବିଜୟୀର ପୁରସ୍କାର ।

ଶତ୍ରୁ—[ ଚିତ୍କାର କରି ] ପୁରସ୍କାର ନୁହେ ରାକ୍ଷସୀ ଅଭିସମ୍ପାତ
[ ପତନ ଓ ମୂର୍ଚ୍ଛା ]
( ନେପଥ୍ୟେ ବିଷାଦ ସଙ୍ଗୀତର ଗମ୍ଭୀର ମୂର୍ଚ୍ଛନା )

ପ ଟ ପ ତ ନ

# ଦ୍ୱିତୀୟ ଅଙ୍କ

## ୧ମ ଦୃଶ୍ୟ

( ସ୍ଥାନ — ଶତ୍ରୁଦମନ ଗୃହର ବହିରସ୍ଥ ଅଳିନ୍ଦ, ସମୟ — ସନ୍ଧ୍ୟା—ଜଗୁ ତର୍କଚଞ୍ଚୁ ସେଠାଲି ସେଠି ବସି ନଶା ଖାଉଥିଲେ । ଚଞ୍ଚଳା ଭଲ ବେଶରେ ପହଞ୍ଚିବା ଓ ସେମାନଙ୍କ ନିକଟରେ ବସିବା, ସମସ୍ତେ ମୁହଁ ଚାହାଁ ଚାହିଁ ହେଲେ । ପରେ ପୂର୍ବ କଥା ଖିଅ ଧରି ତର୍କଚଞ୍ଚୁ କହିଲେ ।)

ତର୍କଚଞ୍ଚୁ—ଆଚ୍ଛା ଭାଇ ଜଗୁ, ସେଠାଲ ଦେଖିଲ ଆମ୍ଭେମାନେ ଏକତା ଦ୍ୱାରା କେତେ ବଡ ବଡ଼ କାମ ଫତେ କଲେ ଏକତା ନ ଥିଲେ କ'ଣ—

ଜଗୁ—ଆରେ ଏକଥା କ'ଣ—ସେକଥା କଅଣ ? କଥାତ ଗୋଟିଏ ।

ତର୍କ—ଆରେ ଓଲୁ ! ଏ କଥା ନୁହେଁ—ଏକତା ଏକତା, ଗିଆପ ମୂର୍ଖ ହେଲଠୁଁ କଥା ସଇଲା । ଦେଖୁଛ କେନାଏ—କଣ୍ଟୁ ବୁଝି ପାରୁ ନାହିଁ ।

ସେଠାଲ—ବୁଝିବ କୁଆଡ଼ୁ—ମୁଣ୍ଡ ତ ଗୋବର ଗଡ଼ଆ

ତର୍କ—ଆରେ ଏହ ଯେ ବାର ରକମ ନଶାପାଣି କରୁଥିଲେଁ—କିଏ ଖାଉଥିଲ ଅଫିମ—କିଏ ଖାଉଥିଲ ଗଞ୍ଜେଇ—କିଏ ଖାଉଥିଲ ତାଡ଼—ମୁଁ ଯେମିତ ମଦ—ସମସ୍ତେ ସବୁ ଗୁଡ଼ ଏକ ଜାଗାରେ ବସି ପାଞ୍ଚ ରକମ ଗୁଣ୍ଡ ଦେଇ ମଉଜ କର ଏଇ ଯେଉଁ ଗୁଲ ଖାଇଲୁ—ଏହାକୁ କହନ୍ତ ଏକତା—ପଞ୍ଚପ୍ରାଣ ଏକଆତ୍ମା—

ସେଠାଲ—ଯାହା କହିଲ ମିତ୍ରେ—ନଶାଭିତରେ ରଜାଟାଏ—ମିଜାଜ୍ ଏପର ଥଣ୍ଡା ରଖେ—

ଜଗୁ—ଆରେ ଭାଇ, ମୁଁ ତେଣ ସେଥିପାଇଁ ଆଗରୁ ଗୁଲ ଧରିଛୁ—ଏଥିରେ ବଡ ସାନ ନାହିଁ—ହାଡ଼ି ପାଣ ଜାତି ବିଗୁର ନାହିଁ—ଧୋବା ମୁହଁରୁ ଛଡ଼ାଇ ବ୍ରାହ୍ମଣ ଖାଏ—ବ୍ରାହ୍ମଣ ମୁହଁରୁ—

ତର୍କ—ଆରେ ଶୁଣ—ଏଇ ଏକତା ଯୋଗୁଁ ସେନାପତି ହାତ କଟାଇଲୁ—ତା ଝିଅକୁ ଘରୁ ବାହାର କଲୁ—ସେନାପତିକୁ ଛଡ଼ାଇ ତା ଜାଗାରେ ନୂଆ ସେନାପତି ବସାଇଲୁ ପୁଣି—ଯେ ଆମକୁ ନଶାଖୋର ବୋଲ ବାଡେଇ ଦେଲ—ତାହାର ଖାସ୍ ବସିଲା ଘରକୁ ଆମର ନଶାପାଣିର ଅଡ୍ଡା କଲେଁ—

ନୋହିଲେ କାହିଁ ଗୁହବଣ କାହିଁ ମଲଚଣ୍ଡିଆ ବୁଲି ବୁଲି
କେତେ ହରିଗଣ ହେଉ ନ ଥିଲେ — ଏହା ଉପରେ ପୁଣି
ପୁରସ୍କାର — ଆଉ କ'ଣ ଲୋଡ଼ା ?

ଚଞ୍ଚଳା — ଆହା ମୋ କରାମତି — ସତେ ଯେମିତି ଯୁଆଙ୍କର ଯୋଗେ
ହେଲା — ମୁଁ ନ ଥିଲେ ଦେଖା ଯାଇଥାନ୍ତା ଯେ —

ତର୍କ — ତୁଠା କଏ ଲୋ ! ମାଇକିନା ଜାତି, ମୁଣ୍ଡରେ ବଣ୍ଟାଏ ବୋଲି
ବୁଦ୍ଧି ନାହିଁ — କଥା କହୁଛୁ ଷାଠିଏ ହାତ — ଆଲୋ !
ତୋତେ ପହିଲୁ ଘରୁ କାଢ଼ି ନ ଆଣିଥିଲେ — ତୋତେ ମୋ
ଓସ୍ତାଦି ହାତ ନ ଦେଇଥିଲେ କେତେ କରାମତି ଦେଖାଇ
ଥାଲୁ ଦେଖିଥାନ୍ତି ଯେ — ତୋର ଚଉଦ ପୁରୁଷ ପାରନ୍ତାନା
— ଛତରଖାଇ କୋଉଠିକାର !

ଚଞ୍ଚଳା — ମୋ ଚଉଦ ପୁରୁଷ ଓପଡଉଛ କାହିଁକି ମ ?

ତର୍କ — ନାହିଁ ତୋତେ ଡରିବ ।

ଜଗୁ — ଆହା କିଏ ତକରାରରୁ କ ମିଳିବ, ହଁ ତୁ ଯେମିତି କଲୁ
ସେମିତି ନୂଆ ସେନାପତିଙ୍କର ସୁ ନଜରରେ ପଡ଼ିଗଲୁ — ହାର
ପାଇଲୁ — ପିନ୍ଧା ପାଇଲୁ — ଅବିକା ପୁଣି ନୂଆ ପୁରସ୍କାର
ପାଇବୁ — ସେଥିରୁ ଆମକୁ କଅଣ ଭାଗ ଦେବୁ ?

ସେଠାଲ — ଯାହା କୁହ — ସଖୀର ଆମର କପାଳ ଖୋଲିଗଲା, ଉଚ୍ଛୁଣି
ଆମକୁ ଗୋଟାଏ ଭଲଗୀତ ଗାଇ ଖୁସି କରାଉ — ସେନାପତି
ଆସିବା ଯାଏ ଟିକଏ ମଉଜ ଚାଲୁ —

( ଚଞ୍ଚଳା ଗୀତ ଆରମ୍ଭ କରିବାବେଳେ ପରଶୁରାମର ପ୍ରବେଶ )

( ଗୀତ )

ଦେଇଛି ବାଳ ଜୀବନ ପଦତଳେ ମୁଁ ତ ପଦତଳେ ।

ପରଶୁରାମ — ଏ ସବୁ କଅଣ ? ଏତେ ଗୋଲମାଳ କାହିଁକି ?

ସମସ୍ତେ — (ସନ୍ତ୍ରସ୍ତରେ) ଆଜ୍ଞା, ଆମେ ନୋହୁଁ, ଏଇ ଚଞ୍ଚଳା କରୁଥିଲା ।

ପର୍ଶୁ—ଚଞ୍ଚଳା ?

ଚଞ୍ଚଳା—(ହସି) ଚହ୍ନିଲ କାଲ ଗଡ଼ିଗଲାଣି ପରା ଆଉ ଚହ୍ନିବ
କାହିଁକି ? ହଉ—ନ ଚହ୍ନ ପଛକେ [ପାଖକୁ ଯାଇ] କାହିଁ
ମୋ ପୁରସ୍କାର, ମୁଁ ଯାଉଛି—ଏଣିକି କେତେ ନୂଆ ଜୁଟିବେ

ପର୍ଶୁ—(ରାଗିକରି) କଅଣ ହେଲା ।

ତର୍କ—ଚୁପକର—ଗିହାପ ମାଇକିନିଆ ହେଲାନ୍ତ,କଥାମାନଙ୍କ ଯେଉଁ
ସୁନ୍ଦରୀ ଲୋକତ, ଖାତର ପଡ଼ୁନାହିଁ । ଟେଭାଭଳ ପର୍ଶୁଶରଣା
ପୋଇଲ ତାଙ୍କ ଗୋଡ଼ ତଳେ ଗଡ଼ଗଡ଼—କେଉଁ ଲୋକକୁ
କପର କଥା କହନ୍ତି—

ପର୍ଶୁ—ଏପରି ହୀନ ଚରିତ୍ର ସ୍ତ୍ରୀ ଲୋକ ମୋର ଦରକାର ନାହିଁ,
ଏହାକୁ ଏଠାରୁ ଦୂର କରିଦଅ ।

ଜଗୁ—ବାହାର ପୋଇଲ (ଗୋଇଠା ମାରି ଚଞ୍ଚଳାକୁ ତଡ଼ିଦେଲା)
[ଏଣେ ତେଣେ ଅନାଇ ଅନାଇ ଶତ୍ରୁଦମନର ପ୍ରବେଶ]

ଶତ୍ରୁ—ପୁଷ୍ପ=ପୁଷ୍ପ—ମା ମୋର କୁଆଡ଼େ ଗଲୁ—?
ଜଗୁ ସେଠାରେ ପ୍ରଭୃତି ଉପରେ ଗୁଲି ହୁକା ଲୁଗୁଇବା

ପର୍ଶୁ—ଡର କାହିଁକି ?

ସମସ୍ତେ—ନାହିଁ ଆଜ୍ଞା କି ଡ଼ର, କିଏ ତୁ ବୁଢ଼ା ? ଏଠି ପୁଷ୍ପ କି ଫଳ
କିଛି ନାହିଁ, ଯା ବଗିଚ୍ଛରେ ଖୋଜିବୁ—

ଶତ୍ରୁ—ଏଁ, ମୋ'ରି ଗୃହରେ ମୋର ସମ୍ମୁଖରେ ଏପରି କଥା,କିଏ
ତୁମ୍ଭେମାନେ ?

ଜଗୁ—(ହସି ହସି) ଚିହ୍ନି ପାରୁନାହଁ ? ହାତ ଗିନା ତୁମର ଯାଇଛି,
ଆଖିତ ଅଛି—

ଶତ୍ରୁ—କଅଣ ? ଏତେଦୂର ଆସ୍ପର୍ଦ୍ଧା—(ଜଗୁ ଆଡ଼ ଉଡ଼ିଯିବା)

ପର୍ଶୁ—ଆସ୍ପର୍ଦ୍ଧା ତୁମ୍ଭର ନା ଆମ୍ଭର—ଆଖି ରଙ୍ଗାଉଛ କାହା ଉପରେ

ଆଜି ସେ ଦିନ କାଳ ନାହିଁ ବୁଢା । ଚକ ଘୂରି ଯାଇଛି—ଯା ବାହାରି ଯା—ନଚେତ୍—

ଶତ୍ରୁ—ନଚେତ୍ ବାହାର କରିଦେବ—ନା ? ହତ୍ୟା କରିଯାଅ । ସିଂହ ମେଲେବେଳେ ଶକ୍ତିହୀନ ହୁଏ ଶୃଗାଳ ମଧ୍ୟ ତା ମୁଖରୁ ଗ୍ରାସ କାଢ଼ିନିଏ ।

ପର୍ଣ୍ଣ—କ'ଣ ଅନାଉଛ ସେଠାଳ—ଦିଅ ବେହିଯ୍ୟାକୁ ତଣ୍ଟି ଆମାରି ବାହାର କରିଦିଅ—(ସେଠାଲ ଉଠିବା)

ଶତ୍ରୁ—(ଯାଉ ଯାଉ) ଏହା ମଧ୍ୟ ଭାଗ୍ୟରେ ଥିଲା । ବର୍ତ୍ତମାନ ସୁଦ୍ଧା ସଂସାର ଠିକ୍ ଓଲଟପାଲଟ ହୋଇ ନାହିଁ । ବର୍ତ୍ତମାନ ସୁଦ୍ଧା ପ୍ରବଳ ସୂର୍ଯ୍ୟ ପଶ୍ଚିମରେ ଅସ୍ତଯାଉଛନ୍ତି—ବର୍ତ୍ତମାନ ସୁଦ୍ଧା ଖରା ବର୍ଷା ଦିନରାତି, ନିୟମିତ ରୂପେ ହେଉଛି—ବର୍ତ୍ତମାନ ସୁଦ୍ଧା ଗ୍ରହ ଉପଗ୍ରହ ସବୁ ଠିକ୍ ଆଗ ପରି ଆପଣା କକ୍ଷରେ ବୁଲୁଛନ୍ତି—ବର୍ତ୍ତମାନ ସୁଦ୍ଧା ମାତା ସନ୍ତାନକୁ ସ୍ତନ୍ୟ ଦେଇ ପାଳନ କରୁଛି, ବର୍ତ୍ତମାନ ସୁଦ୍ଧା ମାନବ ମନରୁ ସ୍ନେହ ମମତା ସମୂଳେ ଧ୍ୱଂସ ହୋଇ ନାହିଁ—ତେବେ—

ଜୟ—ଆରେ ବୁଢ଼ା— ଏ ପ୍ରଳାପ ବକିବା ସ୍ଥାନ ନୁହେଁ । ସଂସାର ଯେମିତି ଥିଲା ଯେମିତି ଅଛି—କେବଳ ତୋହରି କଥା କେହି ମନେ ପକାଏ ନାହିଁ । କୋଟିଏ ତାରା ଭିତରୁ ଗୋଟିଏ ଖସି ପଡ଼ିଲେ ସେ ଯାଗା ଯେପରି ଅପୂର୍ଣ୍ଣ ରହେ ନାହିଁ— ତୋହରି ଭାଗ୍ୟ ବିପର୍ଯ୍ୟୟରେ ଠିକ୍ ସେହିପରି କାହାରି ଦୃଷ୍ଟି ନାହିଁ କିମ୍ବା ଚିନ୍ତାନାହିଁ—ପରିବର୍ତ୍ତନ ଜଗତର ହୋଇ- ନାହିଁ—ହୋଇଛି ତୋର, ତୋ'ର ଅବସ୍ଥା କେବଳ ଓଲଟ ପାଲଟ ହୋଇଯାଇଛି; ବୁଝିଲୁ, ଯା ପଳା— ।

ଶତ୍ରୁ —ହଁ ଯାଉଛି—କିନ୍ତୁ ମନେରଖ, ଏଦିନ ରହିବ ନାହିଁ—ଏ ଅନ୍ୟାୟର ସୁବିଚାର ହେବ—ଏ ପାପର ପ୍ରାୟଶ୍ଚିତ

ହେବ—ଏ ଅଧର୍ମର ଶାସ୍ତି ମିଳିବ—ସେତେବେଳେ ଦଣ୍ଡପଳକର ଶତବୃଶ୍ଚିକ ଦଂଶନରେ ଜର୍ଜରିତ ହୋଇ ଆଉ ଅନୁତାପ କରିବାକୁ ସୁଯୋଗ ପାଇବ ନାହିଁ—ମନରୁ ଆଜ ଯେଉଁ କରୁଣା, ସହାନୁଭୂତି ବିବେକକୁ ଜଳାଞ୍ଜଳି ଦେଇଛ—ସେତେବେଳେ ଶତବ୍ୟାକୁଳ କଣ୍ଠରେ ସହସ୍ର ଚିତ୍କାର କରି ଲୋଡ଼ିଲେ ସୁଦ୍ଧା କେହି ଶୁଣିବେ ନାହିଁ—ପଦେ ଆହା କେହି କହିବେ ନାହିଁ । ସଂସାର ! ! ତୋର ଏହି ଅବସ୍ଥା—ଏତେ ଅବିଚାର, ଏତେ ଅତ୍ୟାଚାର—ଓଃ । ଗୋଟାଏ ଦାବାନଳ—ଗୋଟାଏ ଭୂମିକମ୍ପ—ଗୋଟାଏ ପ୍ରଳୟ ଝଞ୍ଜାରେ ସବୁ ରେଣୁ ରେଣୁ ହୋଇ ଧୂଳିରେ ମିଶି ଯାଉ ନାହିଁ କାହିଁକି ?

## ୬ଷ୍ଠ ଦୃଶ୍ୟ

( ସ୍ଥାନ—ତୋଷାଳି ରାଜ ପ୍ରାସାଦର ମନ୍ତ୍ରଣା କକ୍ଷ । ରାଜା ଶିଳାଦିତ୍ୟ ନିଜର ମନ୍ତ୍ରଣା କକ୍ଷରେ ଛିଡ଼ା ହୋଇଥିଲେ । ମୁହଁରେ ତାଙ୍କର ଚିନ୍ତା ଆତଙ୍କ ଏବଂ ଅସ୍ଥିରତାର ଗଭୀର ରେଖା—ନିକଟରେ ମନ୍ତ୍ରୀ ଉପସ୍ଥିତ ରାଜା କିଛି ଗୋଟାଏ ସମ୍ବାଦ ଶୁଣି ଚିନ୍ତା କଲେ ଏବଂ ତାହାପରେ କହିଲେ )

ଶିଳା—ହଁ, ତା' ପରେ—

ମନ୍ତ୍ରୀ—ତା'ପର ରାଜ୍ୟମୟ ଅଶାନ୍ତିର ସ୍ରୋତ । ପଶ୍ଚିମରେ ବସ୍ତରରାଜ ବିଦ୍ରୋହୀ, ତାହା ସହିତ ଯୋଗ ଦେଇଛି ମୂଷିକ ରାଜା—ଏଣେ ମଗଧପତି ଅଶୋକ ସମଗ୍ର ଆର୍ଯ୍ୟାବର୍ତ୍ତର ଏକଚ୍ଛତ୍ର

ଅଧିପତି । ବିଜୟ ନିଶା ଏବଂ ସାମ୍ରାଜ୍ୟ ଲୋଭ ଦେବତାଙ୍କୁ
ମଧ୍ୟ ଉନ୍ମାଦ କରିଥାଏ—ଏଣୁ ଆଶଙ୍କା ହୁଏ—

ଶିଳା —ଅଶୋକ ଉତ୍କଳ ଉପରେ ଲୋଲୁପ ଦୃଷ୍ଟି ଦେବ ?

ମନ୍ତ୍ରୀ —ହଁ ମହାରାଜ ସେତେବେଳେ କିଏ ସୈନ୍ୟ ପରିଚାଳନା
କରିବ ? ଶ୍ରୀଗୁମ୍ଫ ଢବାଗ୍ନି ପ୍ରାସାଦ ଭିତରେ; ନବୀନ
ସେନାପତି ମଧ୍ୟ ବିଳାସରେ ଆକଣ୍ଠ ମଜ୍ଜିତ—ଏଇଥିମଧ୍ୟରେ
ଯେତେ ରକମର କଥା— । ( ନୀରବ )

ଶିଳା—ହଁ କୁହ ଚୁପ ହେଲ କାହିଁକି ?

ମନ୍ତ୍ରୀ—ସାହାସ ବଳୁନାହିଁ, ଅଭୟ ମିଳିଲେ କହିବି ।

ଶିଳା—ତୁମେ ମନ୍ତ୍ରଣାଦାତା—ମହାମାତ୍ୟ, ଶଙ୍କାସଙ୍କୋଚ କ ନିମିତ୍ତ

ମନ୍ତ୍ରୀ —ନବୀନ ସେନାପତିଙ୍କର ଦୌରାତ୍ମ୍ୟରେ ପ୍ରଜାଏ ବ୍ୟତିବ୍ୟସ୍ତ,
ଗୁଣ୍ଡାଏ ଇତର ନିଶାଖୋର ସଙ୍ଗରେ ମିଶି ନାନାଦି
କୁକାର୍ଯ୍ୟରେ ଦେଶ ଉଚ୍ଛନ୍ନ କରୁଛନ୍ତି—ଏଥିରେ ରାଜ-
ବଂଶର ମର୍ଯ୍ୟାଦା ହାନି ହେଉଛି—ପ୍ରଜାଙ୍କ ଉପରେ
ଅତ୍ୟାଚାର ।

ଶିଳା—ଅତ୍ୟାଚାର । ( ଚିନ୍ତିତରେ ) କରିବତ ରାଜପୁତ୍ର ହୋଇ
ମାଚ ସ୍ୱଭାବ ।

ମନ୍ତ୍ରୀ —ଅଥଚ ମହିମା ଜାଣି ଶୁଣି ତାଙ୍କୁ ସେନ ପତି କଲେ ।

ଶିଳା—ନ କରି ତ ଉପାୟ ନ ଥିଲା—ରାଣୀଙ୍କ ଅନୁରୋଧ ।

ମନ୍ତ୍ରୀ —ତା ବୋଲି ପ୍ରଜାପୁଞ୍ଜଙ୍କ ପ୍ରତି, ରାଜ୍ୟ ପ୍ରତି ଯେ ଶ୍ରୀଗୁମ୍ଫଙ୍କର
ଗୋଟାଏ ବିରାଟ କର୍ତ୍ତବ୍ୟଅଛି—ତାହା କ'ଣ ଭୁଲିଗଲେ ?

ଶିଳା —ଭୁଲି ନାହିଁ—ସବୁ ବୁଝିଛି କିନ୍ତୁ କଅଣ କରିବ ମନ୍ତ୍ରୀ—
ରାଣୀଙ୍କର କୌଣସି କଥା ଏଡ଼ି ପାରୁ ନାହିଁ—

ମନ୍ତ୍ରୀ —( ସ୍ୱଗତଃ ) ତା ନ ହୋଇଥିଲେ ଶତ୍ରୁଦମନ ପରି ନଷ୍ଟାପର
ଦେଶ ରକ୍ଷକର ଏ ଅବସ୍ଥା ଘଟନ୍ତା କିପରି ? (ପ୍ରକାଶ୍ୟେ)

ମହିମା ମୁଁ ରାଜସେବକ—ରାଜ୍ୟର ଭଲମନ୍ଦ ନିବେଦକ-ରାଜ୍ୟ ବହିରାକ୍ରୁ ଶତ୍ରୁ ସମାକୁଳ, ପ୍ରଜାଏ ରାଜଭକ୍ତି ହରାଇ-ଲେଣି, ପ୍ରଜାଙ୍କର ଏହି ଅସନ୍ତୋଷର ଆଶୁ ପ୍ରତିକାର ନ ହେଲେ ରାଜ୍ୟ ରହିବା କଷ୍ଟକର ।

ଶିଳା—ତୁମେ ଏହାର ବିହିତ ପ୍ରତିକାର କର ମନ୍ତ୍ରୀ ।

ମନ୍ତ୍ରୀ —କରନ୍ତି—କିନ୍ତୁ ମହିମାଙ୍କ ଉଦାସୀନତା ଯେ ମୋର ଆତ୍ମ-ବିଶ୍ୱାସ ତୁଟାଇ ଦେଇଛି ।

ଶିଳା—ତା', ପାଇକମାନେ ଆମର କ'ଣ କରୁଛନ୍ତି ? ଆମର ପାର୍ବତ୍ୟସେନା ଓ ବୋଲଗଡ଼ର ବକ୍ସି ବାହିନୀ ?

ମନ୍ତ୍ରୀ —ସମସ୍ତେ ତ ପ୍ରସ୍ତୁତ ଅଛନ୍ତି—ମାତ୍ର କର୍ଣ୍ଣଧାରହୀନ ସେମାନେ କିଏ ଆଜି ସେମାନଙ୍କ ପ୍ରାଣରେ ଦେଶପ୍ରୀତିର ଉଦ୍ଦୀପନା ଜଗାଇ ଦେବ ? ( ରାଣୀଙ୍କ ପ୍ରବେଶ )

ରାଣୀ—କି ପରାମର୍ଶ ଚାଲିଛି ସ୍ୱାମୀ—

ରାଜା—ରାଜ୍ୟର ଅଶାନ୍ତିରେ ମନ୍ତ୍ରୀ ଉପାୟ ନ ପାଇ ସେଇ କଥା କହୁଥିଲେ ।

ରାଣୀ —ଉପାୟ ପାଉ ନାହାନ୍ତି ? ତେବେ ଯିଏ ଉପାୟ ପାଇବ ତା ପାଇଁ ସ୍ଥାନ ଛାଡ଼ି ଦେଉ ନାହାନ୍ତି ?

ମନ୍ତ୍ରୀ —ମହାଦେବୀ ବୃଥାରେ ମୋତେ ଦୋଷ ଦେଉଛନ୍ତି ।

ରାଣୀ—ବୃଥାରେ ଦୋଷ ଦେଉଛି—ତୁମେ ତେବେ ଅଶାନ୍ତି ପ୍ରତି-କାରର କି ସୁପରାମର୍ଶ ଦେଉଥିଲ ଶୁଣେ—ନବୀନ ସେନା-ପତିଙ୍କର ଦୋଷ ତ ଏତେବେଳ ଯାଏ ଗାଇଲ—ମୁଁ ଉହା-ଡ଼ରୁ କିଛି କିଛି ଶୁଣିଛି ।

ମନ୍ତ୍ରୀ—ଯାହା ପ୍ରକୃତ କଥା ତାହାହିଁ କହୁଥିଲି ।

ରାଣୀ —ଓଃ ! ଏଇ ବୁଦ୍ଧିରେ ମନ୍ତ୍ରୀତ୍ୱ କର, ନବୀନ ସେନାପତି ତୁମ୍ଭ ପରି ଅଜ୍ଞାତ କୁଳଶୀଳ ନୁହନ୍ତି । ତାଙ୍କର ବଂଶ ମର୍ଯ୍ୟାଦା ଓ

ବୀରତ୍ୱର ଅଭିମାନ ଅଛି, ଜାଣ ସେ ଅସିଜୀବୀର ସନ୍ତାନ ।

ମନ୍ତ୍ରୀ —( ସ୍ୱଗତଃ ) ବୀରତ୍ୱ ତ ବିଜୟନଗର ରଣ ଭୂମିରେ ଜଣା ଯାଇଛି । ବଂଶ ଗରିମା ଏଇଠି ଫୁଟି ବାହାରୁଛି । [ପ୍ରକାଶ୍ୟେ] ମୁଁ ବିଶ୍ୱାସୀ ରାଜସେବକ ମାତ୍ର, ତୁଳନାର ପାତ୍ର ନୁହେଁ ମହାରାଣୀ ।

ରାଣୀ —ବିଶ୍ୱାସୀ ରାଜସେବକ ! ଦେଶର ଏ ଭଳି ଅବସ୍ଥାରେ ନିରାଶାର କଥା କୁହନ୍ତି କି ? ନା ମହାରାଜ !—ଆପଣ ନିଶ୍ଚିନ୍ତ ରହନ୍ତୁ । ନବୀନ ସେନାପତି ନିଜର କର୍ତ୍ତବ୍ୟ ସୁସମ୍ପନ୍ନ କରି ପାରିବେ । ଦେଶସାରା ଅଶାନ୍ତି ଅନଳ ଜ୍ୱଳି ଉଠୁ—ଶତ୍ରୁ ଆଉ ଶତ ଆକ୍ରମଣ କରୁ—ଉତ୍କଳ ସେନାର ଅସିଧାର ପରୀକ୍ଷା କରି ଫେରିଯିବ ।

ଶିଳା —ତା କଅଣ ଆଉ ଜିଜ୍ଞେ ନାହିଁ ? ବାସ୍ତବିକ ମନ୍ତ୍ରୀ—ତୁମେ ତ ମୋତେ ସଙ୍ଗତ ମନ୍ତ୍ରଣା ଦେଉ ନାହଁ—ତୁମର କଥା ଗୁଡାକ ଭୀରୁତା ବ୍ୟଞ୍ଜକ—ତୁମ୍ଭର ମନ ଉତ୍ସାହହୀନ । ମନେ ରଖ ମନ୍ତ୍ରୀ, ପୁଣି ଏପରି କହିଲେ ମୁଁ ବଡ଼ ରୁଷ୍ଟ ହେବି—ଯାଅ ! ପ୍ରାନ୍ତବର୍ତ୍ତୀ ସମସ୍ତ ଦୁର୍ଗାଧ୍ୟକ୍ଷଙ୍କୁ ରାଜାଜ୍ଞା ପ୍ରେରଣ କର, ସେମାନେ ଯେପରି ପ୍ରସ୍ତୁତ ରୁହନ୍ତି ।

ମନ୍ତ୍ରୀ— ଯେ ଆଜ୍ଞା ମହାରାଜ ( ପ୍ରସ୍ଥାନୋଦ୍ୟତ )

ଶିଳା —ଆଉ ଉତ୍ତର ଦିଗରେ ଯଜ୍ଞପୁର ଦୁର୍ଗ ସୁରକ୍ଷିତ କରାଇ ରସଦ ସଂଗ୍ରହ କର । ତାମ୍ରଲିପ୍ତିର ଶାସନ କର୍ତ୍ତାଙ୍କୁ ଜଣାଅ—ସେ ତାଙ୍କର ସମସ୍ତ କୈବର୍ତ୍ତ ସୈନ୍ୟ ସୁସଜ୍ଜିତ କରି ମୋର ଅନ୍ୟାଦେଶ ପର୍ଯ୍ୟନ୍ତ ପ୍ରତୀକ୍ଷା କରନ୍ତୁ—ଯାଅ ।

( ରାଜା ରାଣୀ ଏକଆଡ଼େ ଓ ମନ୍ତ୍ରୀଙ୍କର ଅନ୍ୟଆଡ଼େ ପ୍ରସ୍ଥାନ )

ଷଷ୍ଠ ଦୃଶ୍ୟ

( ସମୟ—ସୂର୍ଯ୍ୟାସ୍ତ, ସ୍ଥାନ—କଳଙ୍ଗର ଉତ୍ତର ସୀମାସ୍ଥ ନିର୍ଜ୍ଜନ ଗ୍ରାମ୍ୟପଥ, ରୁକ୍ଷବେଶ ଓ ମୁକ୍ତକେଶରେ ବିଭ୍ରାନ୍ତ ଭାବେ ଚଞ୍ଚଳାର ପ୍ରବେଶ, ମୁଠାରେ ଲମ୍ବ ଛୁରୀଟାଏ । ଦୃଷ୍ଟି ଶୂନ୍ୟ ଏବଂ ମୁଖରେ ପ୍ରତିହିଂସାର କ୍ରୂର ଛଟା—)

ଚଞ୍ଚଳା—ଧର୍ମଗଲା, କର୍ମଗଲା—ଶେଷକୁ ଗୋଟିଏ ଖାଲିଲି—ଯାହା କୁଶିକ୍ଷାରେ ପଡ଼ି, ନିର୍ଦ୍ଦୋଷ ଯୁବକର ସର୍ବନାଶ କଲି—ବୁଢ଼ା ସେନାପତିର ପୁଅକୁ ମରାଇ ବୁଢ଼ାର ହାତ କଟାଇଲି—ତାହାଠାରୁ ଏହି ଗୋଟିଏ ମାଡ଼ । ପାପୀଣୀ, ଡାକିଣୀ ମୁଁ ମୋର ଏହାହିଁ ଉପଯୁକ୍ତ ଶାସ୍ତି—ନା,ନା—ଏହାଠୁଁ ବଳି ବେଶୀ ଦଣ୍ଡ ମୋର ପାଇବା ଉଚିତ । ମୋର ପାପର ସୀମା କଳନା କରି ହେବ ନାହିଁ, ଏପରି ପାପ ଦୁନିଆରେ ଆଉ କେହି କରି ନ ଥିବ । ମୁଁ କି ପ୍ରାୟଶ୍ଚିତ୍ତ କରିବି ? ନା, ମୁଁ ସେ, ଭଣ୍ଡ ଲମ୍ପଟକୁ ପ୍ରଘାତ କରିବି, ହତ୍ୟାକରିବି, ଯେପରି ତାହାର ମଧୁର ନ ଥାରେ ଆଉ କେଉଁ ନାରୀକୁ ନ ଭୁଲାଏ, ଆଉ ଯେପରି ତାର ପାପ ପ୍ରଶ୍ୱାସ, ପବନକୁ ବିଶାକ୍ତ ନ କରେ କିନ୍ତୁ ବିଚରା ବୁଢ଼ାର ଦେଖା ମିଳନ୍ତା କି ମୋର ପାପ କାହାଣୀ କହି ତା ଭୁଲ ଭାଙ୍ଗି ଦିଅନ୍ତି, କ୍ଷମା ତ ସେ ମୋତେ ଦେବେ ନାହିଁ, ଦେଲେ ମୁଁ ବି ନେବି ନାହିଁ,ହେଲେ ବୁଢ଼ା ମରିବା ଆଗରୁ ଥରେ ଶୁଣି ଯା'ନ୍ତା କି ତା ପୁଅ ନିର୍ଦ୍ଦୋଷ, ରାଣୀ ଚକ୍ରାନ୍ତ କରି ଏ ଦଶା ଘଟାଇଲେ, ବିଚରାର ମନ ଟିକିଏ ଉଶ୍ୱାସ ହୁଅନ୍ତା—ଓଃ (ବସି ପଡ଼ି ଚିନ୍ତା କରିବା)

[ପର୍ଶୁରାମର ପ୍ରବେଶ)

ପଶୁ—କାହିଁ—ଏଇଠିକ ଆଣି ଦେବେ ବୋଲିତ କଥା ହୋଇଥିଲା ଏତ ଓଡ଼ିଶା ମୂଳକ ଶେଷ ଆଉ ଜାଗା—ବେଶ ନରେଲା—କାହିଁ ଏତେବେଳ ଯାଏ କୁଆଡ଼େଗଲା, ଟଙ୍କା ପଇସାତ ଯେତେ ଗୃହିଲା ଦେଇଛୁ—ଦେଖିବାକୁ ଖାସ ସୁନ୍ଦରୀ—ଗୋଟିଏ ଗୃଉଳରେ ଗଡ଼ା (ଗୁଡିରେ ହାତମାରି)ନା ଡ଼ର କାହାକୁ । ମନଟା ଗୁଡ଼ ୨ ହୋଇଯାଉଛି ଟିକଏ ପିଇ ନେଲେ (ମଦ ପିଇବା)—ବେଶ —ଟିକଏ ବସେ ଆଗେ ।

ଚଞ୍ଚଳା—(ସ୍ୱଗତ ବୁଝିଲି ପୁଣି କାହାର ସର୍ବନାଶର ମତଲବରେ ବସିଛି । ବିଧାତା ଠିକ ସୁଯୋଗ ଜୁଟାଇ ଦେଇଛି—ଏଥର ଏବେଳେ ପାପୀକୁ ଶେଷ କରେ—[ପଛକୁ ଶ୍ରେରାଧର ଚ ପ ଚପ ଆସି ଆଘାତ]

ପଶୁ—ବାପରେ—ଉଃ—ହୁଃ

ଚଞ୍ଚଳା—ଆଉ ବାପରେ—ଖାଲି ମଲା ଆଗରୁ ଦେଖି ଯା—ଯାହାର ସର୍ବନାଶ କରି ଗୋଇଠା ମାରି ତଡ଼ି ଦେଇଥିଲୁ—ମୁଁ ସେହି ଚଞ୍ଚଳା ।

ପଶୁ—[ଅତି କଷ୍ଟରେ] ହା ବିଧାତା—ଉଃ !

ଚଞ୍ଚଳା—ପୁଣି ସେହି ପବିତ୍ରନାମ ପାପ ତୁଣ୍ଡରେ ଧରୁଛୁ,(ଆଘାତ)

ପଶୁ—ଉଃ—ହୋ—(ମୃତ୍ୟୁ)

ଚଞ୍ଚଳା—ହେଲା । ଭଗବାନ ! ନା ନା!—ସେ ନାମ ଧରିବା ମୋର ଅଧିକାର ନାହିଁ । ମୁଁ ଏବେ କ'ଣ କରିବି, କୁଆଡ଼େ ମିବି ? ( ବିହ୍ୱଳ ଭାବେ ଏପାଖ ସେପାଖ ହେବା)

[ଶତ୍ରୁଦମନର ପ୍ରବେଶ)

ଶତ୍ରୁ—ଏ କ'ଣ—ହତ୍ୟା ! ଉଃ ! ଗୃହଆଡ଼େ ହତ୍ୟା—ଖାଲି ହତ୍ୟା—ଦୁନିଆ ସାରା ହତ୍ୟା, ହତ୍ୟା, ହତ୍ୟା (ଚଞ୍ଚଳାକୁ ଦେଖି) —କିଏ—ତୁ ?

ଚଞ୍ଚଳା—( ଉପରକୁ ଗୃହିଁ ) ଦୂରକୁ ଗୃଲଯ ଅ—ମୁଁ ପିଶାଚମା—
ମୋର ପ୍ରଶ୍ୱାସରେ ବିଷ, ସ୍ପର୍ଶରେ ମୃତ୍ୟୁ—

ଶତ୍ରୁ—ଆହା ବିଚ୍ଛାର ମୋର ପର ଶୋକାତୁର—ମୋର ପର ମର୍ମବ୍ୟଥା ଭୋଗୁଛି ( ପ୍ରକାଶ୍ୟେ ) କ'ଣ ହୋଇଛି କହ—ମୃତ୍ୟୁତ ମୋତେ ଡର ପଳାଇଛି ନାହିଁ !

ଚଞ୍ଚଳା—କଅଣ ଆଉ କହିବ ? ମୋ କଥାର ଶେଷ ନାହିଁ କି ମୋ ପାପର ଅନ୍ତ ନାହିଁ—ମୁଁ କିଏ ଚିହ୍ନି ପାରୁ ନାହିଁ,ସେନାପତି ! ମୁଁ ଯେ ତୁମର ସର୍ବନାଶ କାରଣୀ—

ଶତ୍ରୁ— ମୋର ସର୍ବନାଶ କାରଣୀ ( ବିସ୍ମୟରେ )

ଚଞ୍ଚଳା— ହଁ, ଯାହା ହୋଇଛି ସବୁ ମୋର ଦ୍ୱାରା ।

ଶତ୍ରୁ— (ସ୍ୱଗତ) ଆହା ବିଚ୍ଛାର ମୋର ପର ଉନ୍ମାଦମା—
( ପ୍ରକାଶ୍ୟେ ) କ'ଣ କରିଛୁ ତୁ ?

ଚଞ୍ଚଳା—ତୁମର ପୁତ୍ର ହତ୍ୟା, ତୁମର କନ୍ୟା ଚୋର, ତୁମର ପୁଅ ନିର୍ଦ୍ଦୋଷ, ଝିଅ ନିଷ୍ପାପ—

ଶତ୍ରୁ—ଏଁ ଏଁ—ପୁଅ ମୋର ନିର୍ଦ୍ଦୋଷ । ମନ ଧୈର୍ଯ୍ୟଧର—ତୁମେ କାହିଁକି ଏକା କଲ ? ମୁଁ ତୁମର କି ଦୋଷ କରିଥିଲି ?

ଚଞ୍ଚଳା—ରାଣୀ ଓ ତାଙ୍କ ଭାଇର କୁଶିକ୍ଷାରେ ପଡ଼ି—ତୁମେ ତାଙ୍କର ସର୍ବନାଶ କରିଥିଲ, ସେ ତୁମର ସର୍ବନାଶ କଲେ କିନ୍ତୁ ମୋର ଦୁଃଖ ଏହି ଯେ ମୋପରି ରାକ୍ଷସୀ ଦ୍ୱାରା ତାହା ହେଲା ।

ଶତ୍ରୁ—[ମୁଣ୍ଡରେ ହାତମାରି] ହା ବିଧାତା ଏଇ କଥା ଶୁଣା-ଇବୁ ବୋଲି କ'ଣ ଏତେକାଳ ବଞ୍ଚାଇ ରଖାଇଲୁ । କିନ୍ତୁ ସ୍ଥବିର ମୁଁ—ଏହାର କି ପ୍ରତିଶୋଧ ନେବି ! ସବୁ ଯେ ଯାଇଛି ।

ଚଞ୍ଚଳା— [ ଦଉଡ଼ି ଆସି ଗୋଡ଼ତଳେ ପଡ଼ି ] ମୋତେ କ୍ଷମାକର ।

ଶତ୍ରୁ —( ଉନ୍ମାଦତୁଲ୍ୟ ) କ୍ଷମା—କ୍ଷମା—ହେଉ ! ଭାଗ୍ୟରେ ମୋ

ପ୍ରତି ଅପ୍ରସନ୍ନ ତୁ କ'ଣ କରିବୁ—ଏ ମୃତ୍ୟୁର କରାଳ କ୍ଷେତ୍ରରୁ ପଳାଇ ଚାଲ । ଖାଲି ଟିକିଏ ସୁବିଧା ସୁଯୋଗ ମିଳୁ ପରେ ପ୍ରତିଶୋଧ —(ଯୁଦ୍ଧର ପଳାୟନରେ ଚଞ୍ଚଳା ବ୍ୟସ୍ତ ହୋଇ ଚାହିଁଲା, ଜଣେ ସନ୍ନ୍ୟାସୀ ଆସୁଥିଲେ ତାଙ୍କ ପାଖକୁ ଦୌଡ଼ିଯାଇ କହିଲା )

ଚଞ୍ଚଳା—କିଏ ଅଛ ଟିକିଏ ଆଶ୍ରୟ ! ରକ୍ଷାକର ବାବା—ଏଇ ଯେ ଦୃଢ଼ ପଳାଇ ଯାଉଛି (କାନ୍ଦ କାନ୍ଦ ହୋଇ) ବିଚରାର ମୋ ପାଇଁ ଏତେ ଦଶା, ତାକୁ ଦୟାକରି ଫେରାଇ ଆଣ ।

ସନ୍ନ୍ୟା—(ଚାହିଁ) ଉନ୍ମାଦର ଲକ୍ଷଣ ନାରୀ—ତାକୁ ଆଉ ଫେରାଇ ଆଣି ହେବ ନାହିଁ । ଆସ, ତୁମର ଆଶ୍ରୟର ବ୍ୟବସ୍ଥା କରିବ । ବେଶୀ ଅନ୍ଧାର ହୋଇ ନାହିଁ, ସାମାନ୍ୟ ଚେଷ୍ଟା କଲେ ଅନେକ ଦୂର ଯାଇ ପାରିବା ।

ଚଞ୍ଚଳା-- ତୁମ ସାଙ୍ଗରେ ଯିବି ମୁଁ କିଏ ଜାଣ ?

ସନ୍ନ୍ୟା—ଜାଣିବାର ପ୍ରୟୋଜନ ନାହିଁ ତୁମେ ବିପନ୍ନା ଏହାହିଁ ଯଥେଷ୍ଟ ପରିଚୟ ।

**ଚଞ୍ଚଳା—ଯଥେଷ୍ଟ ନୁହେଁ-- ମୁଁ ନରଘାତିନୀ — ନାରୀଘାତିନୀ-ପାପିଷ୍ଠା,** କୁଳଟା, ମୋର ପାପରେ ଆଉ କାହାକୁ ଜର୍ଜରିତ କରିବି ନାହିଁ—କଳଙ୍କରେ ରହିବା ମୋର ଅସମ୍ଭବ ।

ସନ୍ନ୍ୟା—ବେଶ୍, ତେବେ ଚାଲ ମୋର ପାଟଳିପୁର ଆଶ୍ରମରେ ରହିବ— କିନ୍ତୁ ବହୁଦୂର ପଥ ଯାଇପାରିବ ? [ଚିନ୍ତାକରି] ହଁ ଏକ ସୁବିଧା ଅଛି—ମଗଧେଶ୍ୱର ବର୍ତ୍ତମାନ ରାଜ୍ୟ ପରିଦର୍ଶନ ନିମିତ୍ତ ଆସିଛନ୍ତି—ଅଳ୍ପ ଦୂରରେ ତାଙ୍କ ଶିବିର— ତାଙ୍କ କନ୍ୟା ମୋର ଶିଷ୍ୟା—ଚାଲ ତାଙ୍କ ସଙ୍ଗରେ ପଠାଇଦେବି ।

ଚଞ୍ଚଳା—ଆଶ୍ରମରେ ରହିବ ? ପାପିମାନଙ୍କୁ ତମର ଭୟ ନାହିଁ—ମୋର ସ୍ଥାନ ଯେ ନରକ ।

ସନ୍ନ୍ୟା—ଲୋକାଳୟରେ ଯାର ସ୍ଥାନ ନାହିଁ—ଆଶ୍ରମ ଯେ ତାହାର ପାଇଁ—ମୋର ପାପ ପ୍ରତି ଡର ଅଛି—ପାପୀ ପ୍ରତି ଗଭୀର ମହାନୁଭୂତି ଛଡ଼ା ଆଉ କିଛି ନାହିଁ—ପାପ ପୁଣ୍ୟର ବିଚାରକ ତ ମୁଁ ନୁହେଁ ।

ଚଞ୍ଚଳା—ନା ସନ୍ନ୍ୟାସୀ ! ମୋର ବୃତ୍ତାନ୍ତ ଜାଣିନାହଁ ବୋଲି ଏପରି କହୁଛ ? ମୋର ପାପର ସୀମା ନାହିଁ—ଜଗତରେ କୌଣସି କୁକାର୍ଯ୍ୟ ମୋର ବାକି ନାହିଁ ଜାଣ ?

ସନ୍ନ୍ୟା—ଜାଣେନାହିଁ କି ଜାଣିବାକୁ ଚାହେଁ ନାହିଁ ; ଭୁଲନା ମା— ମୁଁ ତୁମର ସନ୍ତାନ ।

ଚଞ୍ଚଳା—(ଅବାକ ହୋଇ) ସନ୍ତାନ ! ତେବେ ଚାଲ ବାପା—(ପ୍ରସ୍ଥାନ)

## ୪ର୍ଥ ଦୃଶ୍ୟ

ସ୍ଥାନ—ବୋଧଗୟା ରାଜ ଉଦ୍ୟାନ

(ସମୟ—ସନ୍ଧ୍ୟା, ଉଦ୍ୟାନର ସରସୀ ତଟରେ ବସି ସଂଘମିତ୍ରା ଚନ୍ଦ୍ରୋଦୟ ଦେଖି ଗୀତ ଗାଉଥିଲେ । ସଙ୍ଗୀତରେ ଅପୂର୍ବ ମୂର୍ଚ୍ଛନା ସାନ୍ଧ୍ୟ ପ୍ରକୃତିକୁ ଲୋଭନୀୟ କରିଥିଲା—ସଙ୍ଗୀତର ସ୍ୱର ଲହରି କ୍ରମେ ଦୂରରୁ ଦୂରକୁ ଯାଇ ଅସୀମରେ ଲୟ ପାଉଥିଲା, ଗାୟିକା ନିଜେ ତନ୍ମୟ ହୋଇ ରହିଥିଲେ । ପଛରୁ ଅଶୋକ ପ୍ରବେଶ କରି ପ୍ରଥମେ ନିର୍ବାକ ଚିତ୍ତରେ ଗୀତଟି ଶୁଣିଲେ । )

[ଗୀତ] ଦିନୁଦିନ ଅନୁକ୍ଷଣ ବଢ଼ୁଛି ଆଶା,
ପୂରିଲେ ନ ପୂରେ ନୁହେ ପରାଣ ତୋଷା ।

ଆବେଗ ଆଶଙ୍କା ତାପ— କେବଳ ବଢ଼ାଏ ପାପ
କାମନାର ଏ ମାଦକ ହିଆ କରେ ଦକଦକ,

ଝୁରି ଝୁରି କ୍ଷୀଣତନୁ—
ପାଶୋର ନ ଯାଏ ମନୁ
ମନେ ହୁଏ ଶେଷ ଆଉ ନ ହେବ ନିଶା ।

( ଗୀତଟି ଶେଷ ପରେ ଅଶୋକ ପାଖକୁ ଯାଇ କହିଲେ )

ଅଶୋକ—ଏ କଅଣ ମା – ତୁ ଏଠି ଏକୁଟିଆ ବସିଛୁ—ତେଣେ ମୁଁ ତୋତେ ଖୋଜି ଖୋଜି ହଇରାଣ ହୋଇଗଲିଣି—

ସଙ୍ଘମିତ୍ରା—କଅଣ ପାଇଁ ବାବା ? କିଛି କାମ ଅଛି ?

ଅଶୋକ—ନାହିଁ କିଛି କାମ ନାହିଁ—ମୁଁ ନଗର ବୁଲି ଯାଇଥିଲି— ଗୋଟିଏ ବଟବୃକ୍ଷ ମୂଳରେ ଅନେକ ଗୁଡ଼ିଏ ନୂତନସନ୍ନ୍ୟାସୀ ବସିଥିବାର ଦେଖିଲି – ତୁତ ଜାଣୁ ସେହି ଅକର୍ମା ଗୁଡ଼ାଙ୍କୁ ଦେଖିଲେ ମୋତେ ବଡ଼ ବିରକ୍ତିଲାଗେ – ଏଣୁ ତାଙ୍କୁ ସେଠାରୁ ବାହାର କରିବାକୁ ଯାଉଥିଲି – ହଠାତ୍ ତାଙ୍କ ଭିତରୁ ଜଣେ କହିଲା – ପିତାର ଏହି ସନ୍ନ୍ୟାସୀ ହିଂସା ଅଥଚ କନ୍ୟାର ଅଚଳା ଭକ୍ତିରେ ପାଷାଣ ତରଳି ଯାଏ – ମନଟା ବଦଳି ଗଲା – ବୁଝିଲି, ସେ ତୋ'ର ପ୍ରଶଂସା କରୁଥିଲା – ନିଜର ନିନ୍ଦାରେ ରାଗ ନ କରି, ତୋ'ର ପ୍ରଶଂସାରେ ମୁଗ୍ଧହୋଇ ସେଠାରୁ ଫେରି ଆସିଲି ଏବଂ ସଙ୍ଗେ ସଙ୍ଗେ ସେହି ଭୂମିଖଣ୍ଡ ତାଙ୍କୁ ଦାନ କରି ଆସିଲି – ସେହି କଥା ତୋତେ କହିବି ବୋଲି ଖୋଜୁଥିଲି –

ସଙ୍ଘମିତ୍ରା – ସଦାଶିବ ତେବେ ମୋର ପ୍ରାର୍ଥନା ଶୁଣିଛନ୍ତି –

ଅଶୋକ – ତୋର କଅଣ ପ୍ରାର୍ଥନା ଶୁଣିଛନ୍ତି ଲୋ—(ସହାସ୍ୟେ)—

ସଙ୍ଘମିତ୍ରା – ଏଇ ତୁମପ୍ରାଣରେ ସନ୍ୟାସୀଙ୍କପ୍ରତି ବିରକ୍ତି ନଜନ୍ମାଇବା ।

ଅଶୋକ—ଦୂର୍ ପାଗଳି ! ବିରକ୍ତ ନ ଜନ୍ମାଇବା ଏଠି କ'ଣ ହେଲା ?
ତୋର ପ୍ରଶଂସା ଶୁଣି ମୁଁ ତ ନରମ ହୋଇଗଲି ମା—

ସଂଘମିତ୍ରା—ସେ ଯାହା ହେଉ ବାବା—( ମୁହଁ ଶୁଖାଇବା ) ।—

ଅଶୋକ—ଏକଣ ? ପୁଣି ମୁହଁ ଶୁଖାଇ ଦେଲୁ କାହିଁକି ? ଆଚ୍ଛା
ତାହାହିଁ ହେଉ—ତୋର ପ୍ରାର୍ଥନା ସଦାଶିବ ଶୁଣିଲେ—
ଚାଲ ଘରକୁ ଚାଲ—ରାଜଧାନୀକୁ ପରା ଆଜି ଫେରିଯିବା ?

ସଂଘମିତ୍ରା—କାହିଁକି ? ଏତେ ତରବର କାହିଁକି ? ଆଉ କିଛି ଦିନ
ରହିବା । ମୋତେ ଏ ଜାଗା ବଡ଼ ଭଲ ଲାଗୁଛି—

ଅଶୋକ—ନାହିଁ ମା, ସେଠି ପରା ରାଜକାର୍ଯ୍ୟ ବହୁତ ବାକି—ତୁ
ଖାଲି ବେରାମ ଥିଲୁ ବୋଲି ଏଠିକି ବାଧ୍ୟହୋଇ ଆସିଥିଲି ।

ସଂଘମିତ୍ରା—ଆଚ୍ଛା ବାପା ରାଜ୍ୟ ପାଇଁ ଏତେ ଭ୍ରାତୃ ହତ୍ୟା କାହିଁକି
କଲ ? ଯେତେ ହେଲା ହେଲା, ଏଣିକି ଭଲା ବନ୍ଦ କର ।

ଅଶୋକ—( ଚିନ୍ତାଭରେ ) ତୁ ସେ କଥା କାହୁଁ ବୁଝିବୁ ମା ? ସେ
ହତ୍ୟା ନୁହେ ଦେଶର ମଙ୍ଗଳ ଲାଗି କର୍ତ୍ତବ୍ୟ ପାଳିବାକୁ
ଯାଇ ନିଜର ମମତାକୁ ବଳିଦାନ ।

ସଂଘମିତ୍ରା—ଏ କି ଜାତିକା ବଳିଦାନବାପା—ରକ୍ତର ଭାଇ-ପିଲାଙ୍କୁ
କେତେ ଆଦର ସୋହାଗରେ ବଢ଼ିଛ, ତାଙ୍କ ପ୍ରତି ଏତେ
ନିଷ୍ଠୁର ପଣ—ଛାଗ, ମହିଷ ଏତେ ବଳି ଆଉଁ ଆଉଁ ଏ
ନରବଳି—ଭୂତ ବଳି ଛାଡ଼ ବାପା ।

ଅଶୋକ—ଛାଗ, ମହିଷ ବଳି ଦେବୀ ପାଖରେ ମା, ଏ ଯେ ଦାନବୀ
ପାଖରେ ବଳିଦାନ—ଦଶଜଣଙ୍କର ଜୀବନ ହାନିରେ ଦଶ
ଶତଙ୍କର ଜୀବନ ରକ୍ଷା, ଦଶଭାଇଙ୍କର ଅପ୍ରୀତିରେ ଦଶ
ସହସ୍ରଙ୍କର ପ୍ରତି ମମତା ଲାଭ—ଛାଡ଼ ତୁ ସେ ସବୁ ବୁଝିବୁ
ନାହିଁ ମା— ଏ ସବୁ ନିର୍ମମ ରାଜନୀତି ।

ସଙ୍ଘମିତ୍ରା — ସେ ଯେଉଁ ମତ ହେଉ ବାବା — ଅହିଂସାର ମତ
ନୁହେଁ — ହିଂସା ଉପରେ ପ୍ରତିଷ୍ଠିତ ରାଜ୍ୟର ମୂଲ୍ୟ କ'ଣ?

ଅଶୋକ — ମୂଲ୍ୟ ଅଛି ମା — ସାମ୍ରାଜ୍ୟ ନାହିଁ ବୋଲି ହିନ୍ଦୁର ହିନ୍ଦୁତ୍ୱ ନାହିଁ — ଆର୍ଯ୍ୟର ଆର୍ଯତ୍ୱ ନାହିଁ — କେବଳ କ୍ଷୁଦ୍ର ସ୍ୱାର୍ଥ — କ୍ଷୁଦ୍ର ଦଳାଦଳି ଓ ସଂଘର୍ଷଣ — ଦେଶରେ ଏହି ଅଧୋଗତି ଏବଂ ଧର୍ମର ଏହି ଘୋର ବ୍ୟତିକ୍ରମ — ମୁଁ ବୁଝି ସୁଝି ଏଥି ପାଇଁ ସ୍ନେହ ମମତା ସବୁ ବିସର୍ଜନ ଦେଇଛି । ଶେଷରେ ଦେଖିବୁ — ଏହି ଧ୍ୱଂସ ଏବଂ ଏହି ହତ୍ୟା ଭିତରୁ, ଏକ ନୂତନ ଧର୍ମ, ନୂତନ ଦେଶ, ନୂତନ ସମାଜର ସୃଷ୍ଟି ହେବ, ମୋର ଏ ହିଂସା ବୋଲି ଯାହା କହୁଛୁ ତାହାହିଁ ଦିନେ ଅହିଂସାର ଜାହ୍ନବୀ ପ୍ଳାବନରେ ଆର୍ଯ୍ୟ ବର୍ତ୍ତରେ ଗୋଟାଏ ପୁଲକ ପ୍ରବାହ ଖେଳାଇ ଦେବ — ଆ ମା, ଏ ସବୁରେ ତୁ ମୁଣ୍ଡ ଖରାପ କର ନା — ଆ — ମୁଁ ଯାଏଁ । (ପ୍ରସ୍ଥାନ)

## ୪ମ ଦୃଶ୍ୟ

(ସମୟ ରାତ୍ରି — ସ୍ଥାନ ଦୟାନଦୀ ତଟସ୍ଥ କୁଟୀର, ମୃତ୍ୟୁଶଯ୍ୟାରେ ଶତ୍ରୁଦମନ — ଝିଅର କୋଳରେ ମୁଣ୍ଡ ଦେଇ ଶୋଇଥିଲେ । ଝିଅ ହୃଦଶ୍ରୀବ ପ୍ରାଣରେ ଏକଧ୍ୟାନରେ ଶତ୍ରୁ ଦମନର ମୁହଁକୁ ଅନାଇ ପଙ୍ଖା କରୁଥାଏ । ଦୂରରୁ ସତେ ଯେମିତି ବିଷାଦଭରା ବଂଶୀର ସ୍ୱରଟାଏ ପବନରେ ଭେଳି ଯାଉଥାଏ । କିଛିକ୍ଷଣ ପରେ ଶତ୍ରୁଦମନ ଆଖି ଫିଟାଇ ନିଜର ଗୃହପୋଖ ଅବସ୍ଥା ଦେଖି ଚିନ୍ତା କଲେ, ପରେ କହିଲେ )

ଶତ୍ରୁଦମନ — (ଚେତା ପାଇ ଗୃହଅଡ଼େ ଅନାଇ) ମୁଁ କେଉଁଠି !— ତୁମେ କିଏ ?

ଧୀର —କିଛି ଚିନ୍ତା ନାହିଁ—ଦେଖ, ନାହିଁ ତୁମ୍ଭେ ସନ୍ନ୍ୟାସୀ ଆଶ୍ର-
ମରେ—

ଶତ୍ରୁ —ଓଃ—ଏଠିକି କିପରି ଆସିଲି—( ବସିବାକୁ ଚେଷ୍ଟା

ଧୀର —ତୁମେ ମୂର୍ଚ୍ଛିତ ହୋଇ ବାଟ ପାଖରେ ପଡ଼ିଥିଲ—ମୁଁ
ନେଇ ଆସିଛି—

ଶତ୍ରୁ —ହଁ ମନେ ପଡ଼ିଲା, ବାବା—ବାଟରେ ପଡ଼ିଥିଲି—

ଧୀର —(ସ୍ୱଗତଃ) କିଏ ଏହି ପରପାରର ଯାତ୍ରୀ—ମୋର ମନ
ଏପରି ସଂସାରସୁଲଭ ମମତାରେ ଭରି ଯାଉଛି କାହିଁକି ?

ଶତ୍ରୁ — ଯୁବକ—( କଷ୍ଟରେ )

ଧୀର —କଅଣ ବେଶୀ କଷ୍ଟ ହେଉଛି ?

ଶତ୍ରୁ —କଷ୍ଟ—କଷ୍ଟର ସୀମାରେ ମୁଁ ଟପି ଆସିଛି ।

ଧୀର —ତେବେ କଅଣ କହୁଛ ?

ଶତ୍ରୁ — ଆଛା କହିପାରି,ସଂସାର ଆଗପରି ଅଛି କି—କିଛି ପରିବର୍ତ୍ତନ
ହୋଇଲାଣି ।

ଧୀର— ସ୍ୱଗତଃ) ଏହା ବୁଦ୍ଧିର ପ୍ରଳାପ ବାକ୍ୟ—କିନ୍ତୁ ଏ କଅଣ—
ମୁଁ ଏହାର କଟାକ୍ଷ ରଶ୍ମିରେ ଏପରି ବିହ୍ୱଳ ହୋଇ ଯାଉଛି
କାହିଁକି—ଏ କି ଦୁର୍ବଳତା—

ଶତ୍ରୁ —ନୀରବ ରହିଲ ଯୁବକ ?

ଧୀର —ସଂସାର ପୂର୍ବ ପରି ରହିଛି ।

ଶତ୍ରୁ —ଠିକ ଦେଖୁଛ—ପୂର୍ବବତ୍ ଅଛି—ଆଗେତ କିନ୍ତୁ ଏତେ
ପ୍ରତାରଣା। ଏତେ ଛଳନା—ଏତେ କୃତଘ୍ନତା—ନ ଥିଲା ।

ଧୀର —ସ୍ଥିର ହୋଇ ଶୋଇ ରୁହ ବୃଦ୍ଧ, ମନରେ ଶାନ୍ତି ପାଇବ ।

ଶତ୍ରୁ —ହଉ, ( ଆଖି ବୁଜିବା )

ଧୀର —ଏ କି ଭାବନା ମୋ ମନରେ ଉଠୁଛି— ସଂସାରତ୍ୟାଗୀ
ସନ୍ନ୍ୟାସୀଙ୍କର ଶିଷ୍ୟ ମୁଁ—ମୋର ଏ ପ୍ରବୃତ୍ତି ଜନ୍ମିଲା—କାହିଁକି?

ଶତ୍ରୁ —( ହଠାତ୍ )ଯୁବକ ! ମୋର ସମୟ ନିକଟ—ମୁଁ କହିଯାଏ--
ବୀର —କଅଣ କହିଯିବ ?
ଶତ୍ରୁ —ମୋର ଆତ୍ମ ପରିଚୟ—ଏହାପରେ କହିବାକୁ ଆଉ ଅବସର ନ ଥିବ ।
ବୀର —ପରେ କହିବ—ବର୍ତ୍ତମାନ ତୁମ୍ଭଙ୍କୁ କଷ୍ଟ ହେବ ।
ଶତ୍ରୁ —ହେଉ ପଛେ—ତୁମେ ଖାଲି ଶୁଣିଯାଅ---
ବୀର —ହଉ କୁହ ତେବେ—ନା ଥାଉ—କି ପ୍ରୟୋଜନ—
ଶତ୍ରୁ —ପ୍ରୟୋଜନ ଅଛି—ମୁଁ କିଏ ଜାଣ—ମୁଁ କଳଙ୍ଗର ଏକକାଳୀନ ଛତ୍ରପତି ଶତ୍ରୁ ଦମନ—[ଦୀର୍ଘନିଶ୍ୱାସ ମାରିବା]
ବୀର —ନା—ତୁମ୍ଭଙ୍କୁ କଷ୍ଟ ହେଉଛି—ଥାଉ ବର୍ତ୍ତମାନ ଇଷ୍ଟ ଚିନ୍ତାକର—
ଶତ୍ରୁ —ଇଷ୍ଟ ଚିନ୍ତା କରିବି—ମୋ ବକ୍ଷରେ କି ଦୁର୍ନିବାର ଶିଖା-ଜ୍ୱାଳା ତା ତୁମ୍ଭେ ବୁଝିବ କାହୁଁ—ନା, ନା, ମୁଁ କହି-ଯାଏ—କେଜାଣି ଅବା ସେଥିରେ କିଛି ଶାନ୍ତି ପାଇବି । ମୁଁ ଥିଲି କଳଙ୍ଗ ସେନାପତି—ମୋର ଅଙ୍ଗୁଳି ସଞ୍ଚାଳ-ନରେ ଲକ୍ଷମଥା ସଞ୍ଚାଳିତ ହେଉଥିଲି—ଦିନେ ମୋର କଟାକ୍ଷରେ ସୈନିକ ପ୍ରାଣରେ ହୃତ୍‌କମ୍ପ ଜନ୍ମୁଥିଲା—ମୁଁ ସେହି ସେନାପତି, ଯାହାର କରୁଣାବଳରୁ ଶିଳାଦିତ୍ୟ ଆଜି କଳଙ୍ଗରେ ରାଜା କହୁ ପାଇଛି କ'ଣ ଜାଣ ? ସେହି କୃତଘ୍ନ ହୈନ୍ଦ୍ର-ରାଜା ମୋର ଅବଶିଷ୍ଟ ଏକମାତ୍ର ପୁତ୍ରକୁ ହତ କରିଛି—ମୋତେ ହସ୍ତହୀନ କରିଛି ଏବଂ ମୋର ଏକମାତ୍ର କନ୍ୟାକୁ ଅପହରଣ କରିଛି—
ବୀର —କେତେ ବର୍ଷ ହେବ ଏହା ଘଟିଛି ।
ଶତ୍ରୁ —ଆଜକୁ ୧୮ ବର୍ଷ ହେବ ( ଦୀର୍ଘନିଶ୍ୱାସ ମାରିବା )
ବୀର —ଥାଉ ବୃଦ୍ଧ ତୁମ୍ଭର ଏ ଦୁଃଖ କାହାଣୀ—

ଶଙ୍କୁ—ଆଜି ଯଦି ବିଧାତା ଦୟାକରି ମୋର ହାତ ଫେରାଇ ଦିଅନ୍ତା—ଯଦି ମୃତ୍ୟୁ ଦୟାକରି ଟିକିଏ ଅବସର ଦିଅନ୍ତା—ତେବେ ଦେଖନ୍ତୁ ଯୁବକ—ଏ ବୃଦ୍ଧ ଏବେ ସୁଦ୍ଧା ଏ ଶରୀରରେ ଏତେ ଶକ୍ତି ରଖିଛି ଯେ ସେ ଯଦି ଥରେ ମାତ୍ର ତାର ପୂର୍ବ ସୈନ୍ୟମାନଙ୍କ ମଧ୍ୟରେ ଠିଆ ହେବ ତାହାହେଲେ ସେହି ସୈନିକ ମାନଙ୍କର ଆନନ୍ଦ ଚିତ୍କାରରେ—କଳିଙ୍ଗ ରାଜ୍ୟ ଏକାବେଳେ ଭସ୍ମୀଭୂତ ହୋଇଯିବ—ଉଃ—(ଦୀର୍ଘନିଶ୍ୱାସ)

ବୀର—କଷ୍ଟ ହେଉଛି ବନ୍ଧୁ—ବନ୍ଦକର—

ଶଙ୍କୁ—ନା ଆଉ ଅଳ୍ପ ଅଛି ଶୁଣିନିଅ—ମୋର ଆଉ କେହି ନାହିଁ। କେବଳ ସେହି ଅପହୃତା କନ୍ୟାଟି ଯଦି କାହିଁ ବଞ୍ଚିଥାଏ ବା ତାହାର କେହି ବଂଶଧରଥାଏ—ଯଦି ତାର କେବେ ସନ୍ଧାନ ପାଅ ତାକୁ କହିଦେବ ଯୁବକ, ମୃତ୍ୟୁର ପଦପାର୍ଶ୍ୱରେ ବସି ତୋର ପିତା, ମାତାମହ ଅନାଇ ରହିଛନ୍ତି, ତୁ କେବେ ପ୍ରତିଶୋଧ ନେବୁ (ଦୀର୍ଘ ନିଶ୍ୱାସ ତ୍ୟାଗ)

ବୀର—(ସ୍ୱଗତଃ) ଅପହୃତା କନ୍ୟା—ହେବ ତାହାର ବଂଶଧର—(ପ୍ରକାଶ୍ୟେ) ତୁମ୍ଭର କନ୍ୟାର ନାମ କ'ଣ? ପୁଷ୍ପ ନୁହେଁତ ?

ଶଙ୍କୁ—ହଁ, ହଁ, ପୁଷ୍ପ—ତୁମେ କାହୁଁ ଜାଣିଲ—ତାକୁ ଚିହ୍ନ ? କାହିଁଅଛି କହିପାର ? [ ଉତ୍ତେଜିତ ଭାବେ ]

ବୀର— ( ସ୍ୱଗତଃ ) ସେ ଯେ ମୋର—

ଶଙ୍କୁ—(ଉଠିବସି) ଆଉତ ସହି ପାରୁନାହିଁ—[ବୀରକୁ ଧରି ପକାଇ] ମୋର ଯାହା କହୁଛି ଧର୍ମ—ତାହା ତୁମ୍ଭଠାରେ ବନ୍ଧକ ରଖି ଯାଉଛି—କରିବ ଯୁବକ—ମୋର ଅନ୍ତିମ ଅନୁରୋଧ ପ୍ରତିଶୋଧ, ପ୍ର—ତି—ଶୋ—ଧ [ ମୃତ୍ୟୁ ]

ବୀର—[ମୁଣ୍ଡରେ ହାତମାରି] ପୁଷ୍ପ ଯେ ମୋର ମାଆର ନାମ—ସେ ଅପହୃତା ଏବଂ ସମ୍ଭ୍ରାନ୍ତ କଳିଙ୍ଗ କନ୍ୟା—ଏକଥା ଗୁରୁଦେବ

ମଧ୍ୟ କହିଛନ୍ତି, ଓଃ ଏତେ ଦିନେ ଏ ରହସ୍ୟ ବୁଝି ପାରିଲି —ଅଜା, ଅଜା, ( ଶତ୍ରୁଦମନକୁ ଧରି ) ମୁଁ ତୁମ୍ଭର ସେହି ହତଭାଗ୍ୟ ପୌତ୍ର—ଯାଅ ବୀର –ସଂସାରର ପ୍ରପଞ୍ଚ ଜ୍ୱାଳାରୁ ଜୀବନ୍ତ ନରକରୁ ମୁକ୍ତି ନେଇଯାଅ, ଯେଉଁଠି ପ୍ରତାରଣା ନାହିଁ, କୃତଘ୍ନତା ନାହିଁ, ଆତ୍ମଗ୍ଳାନି ନାହିଁ, କିନ୍ତୁ ଆଶୀର୍ବାଦ କର, ତୁମ୍ଭର ନିର୍ଦ୍ଦେଶ ପାଳି ମୁଁ ଯେପରି ଜଗତକୁ ଦେଖାଇ ପାରେ କୃତଘ୍ନତାର ଶାସ୍ତି ଅଛି— ଅତ୍ୟାଚାରର ଦଣ୍ଡ ଅଛି, ଯଦି କୃତକାର୍ଯ୍ୟ ହୋଇ ଫେରେ ତେବେ ତୁମର ଏହି—ମୃତ୍ୟୁ ସ୍ଥାନକୁ ପିତୃ ପୁରୁଷଙ୍କର ପିଣ୍ଡକ୍ଷେତ୍ର କରିବି, ଆଜି ବୁଝୁଛି—ଭିକ୍ଷୁ ପାଳିତ ହେଲେ ମଧ୍ୟ ମୋର ମନରେ ସମୟେ ସମୟେ କ୍ଷତ୍ରିୟସୁଲଭ ଉନ୍ମାଦନା କାହିଁକି ଆସେ । ଏହି ତୁମ୍ଭର ଶବଦେହ ସ୍ପର୍ଶ-କରି ଶପଥ କରୁଛି କଳିଙ୍ଗ ରାଜବଂଶର ବିଲୋପ ସାଧନ କରିବି—ଶିଳାଦିତ୍ୟକୁ ଉଚିତ ଶାସ୍ତି ଦେବି ଯଦି ସେ ନର-କରେ ଆଶ୍ରୟ ନିଏ ତେବେ ସୁଦ୍ଧା ତାର ନିସ୍ତାର ନାହିଁ— ପ୍ରତିଶୋଧ—ପ୍ରତିଶୋଧ—ପ୍ରତିଶୋଧ ।

( ପ ଟ ପ ତ ନ )

ଷଷ୍ଠ ଦୃଶ୍ୟ

( ଉତ୍କଳ ସୀମାନ୍ତ ରାଜପଥ – ତର୍କରଞ୍ଜ୍ୱ ଏକାକୀ କୁଷ୍ଠବ୍ୟାଧି ଗ୍ରସ୍ତ)

ତର୍କରଞ୍ଜ—ଆଉ କେତେ ପଳାଇବି, ପଳାଇ ପଳାଇ ହଇରାଣ । କିଏ ମାଇଲା ନୂଆ ସେନାପତିକୁ ଅଥଚ ଦୋଷ ଲଦା

ହେଲା ଆମ ଉପରେ—ଆଉ ପଳାଇବାର ତ ଶକ୍ତି ନାହିଁ—ଆଉ ପଳାଇଲେ ବା କ'ଣ ହେବ—ଦେହରେ ଯେଉଁ ବ୍ୟାଧି ଦେଖା ଗଲାଣି, ସେ ତ ମଲାର ବଡ଼ ବୋପା, ଧରା ପଡ଼ିଲେ ତ ଶୂଳି—ଏପରି ଖରାପ ରୋଗରେ ପଡ଼ି ସଢ଼ି ମରିବାଠାରୁ ଧରା ଦେଇ ଶୂଳି ପାଇବା ଭଲ, ପାଦତ ଆଉ ପାଦେ ଆଗଉ ନାହିଁ, ଏଇଠି ବସେ, କପାଳରେ ଯାହା ଥିବ, ( ବସି ଗୋଡ଼ ଆଉଁସିବା ମ ଛି ଅଡ଼େଇବା )

( ଜଗୁର ଗ୍ରେଟେଇ ଗ୍ରେଟେଇ ପ୍ରବେଶ )

ଜଗୁ – ବାଟ ତ ଆଉ ଶେଷ ହେବାକୁ ନାହିଁ । ବାବାଜୀ ମଠ ଯେ କେଉଁଠି କୋଉ ବାଟରେ ଯିବ ଜାଣେ ନାହିଁ । ଏହି ଲେଙ୍ଗଡ଼ା ଗୋଡ଼ରେ ୯ ମାସ ହେଲା ଗ୍ଲୁଲଲଣି, ତିନ ଦିନ ହେଲା ପେଟରେ ମୁଠାଏ ଦାନା ପଡ଼ିନାହିଁ, ଏଣେ ପେଟର ଜ୍ୱାଳା ବାହାରେ ରୋଗର ଜ୍ୱାଳା, ମରି ଯାଆନ୍ତି ତ ଏ କଷ୍ଟରୁ ତରି ଯାଆନ୍ତି ! ହେ ଯମଦେବତା ତୁମେ କ'ଣ ମୋତେ ଭୁଲିଗଲ !

ତର୍କ— (ସ୍ୱଗତଃ) ଏ ତ ଜଗୁ ସେଠୀର ତୁଣ୍ଡ ଶବଦ ପରି ବୋଧ ହେଉଛି, ତାର ଦୁଃଖ ବି ମୋ ଦୁଃଖଠାରୁ କମ୍ ନୁହେଁ, ହେବ କାହୁଁ,—ପାପ ବୋଲିତ ଆଉ କିଛି ବାକି ରଖିନାହୁଁ, ମୋତେ ବୋଧ ହୁଏ ଚିହ୍ନି ପାରୁନାହିଁ, ଏ ଦେହ ଯାହା ହେଲାଣି ଏଥିରେ ନିଜର ପୁଅ ମାଇପ ତ ଚିହ୍ନିବା କଷ୍ଟ ।

ଜଗୁ – ବାବା, ଲଣ୍ଡା ବାବାଜୀ ମଠକୁ ବାଟ କିଏ, ଆଉ କେତେଦୂର କହିପାରିବ ?

ତର୍କ —କାହିଁକି ? କଅଣ ପାଇଁ ସେଠାକୁ ଯାଉଛ ?

ଜଗୁ— ବାବା, ଶୁଣିଲି—ସେଠାରେ ହୁକୁମ୍ ମିଳୁଛି—ଯେତେ ଲେଙ୍ଗଡ଼ା, କଣା, ବଡ଼ ବେମାରିଆ ସେଠି ଆଶ୍ରା ପାଉଛନ୍ତି

ଭଲ ହେଉଛନ୍ତି । ସେଥି ପାଇଁ ବାବା, ବହୁତ ଦୂରରୁ ଓଡ଼ିଶା ରାଇଜରୁ ଆସିଛୁ । ( ହଠାତ ତର୍କଚଞ୍ଚୁ ଦେହ ଦେଖି ) ବାପା ତୁମ ଦେହରେ ତ ରୋଗ ଦେଖାଗଲାଣି, ତୁମେ କ'ଣ ସେଇଠିକି ଯାଉଚ କି ? ମୋତେ ଟିକିଏ ସଙ୍ଗରେ ନିଅ ।

ତର୍କ —କି ଜଗୁ ଚିହ୍ନି ପାରୁନାହୁଁ ? ମୋତେ ଭଲ କରି ଅନାଇଲୁ

ଜଗୁ —( ନିରୀକ୍ଷଣ କରି ଆଶ୍ଚର୍ଯ୍ୟେ ) ଏ ଯେ ମିଶ୍ରେ—ଆଁ—ତୁମ ଚେହେରା ଏମିତି ହୋଇଚ୍ଛି ଯେ ତୁମକୁତ ସାତ ଦୁଷମନ ଚିହ୍ନି ପାରିବ ନାହିଁ—ତୁମେ ଏଠି ବସିଛ ଚାହାଁ ଦଉ ନା, ସେ ମଠର ଖବର ପାଇ ବୋଧ ହୁଏ ଆସିଛ ?

ତର୍କ—ଆରେ ଜଗୁ—ମଠ ଫଠ ଖବର ମୁଁ ଜାଣେ ନାହିଁ । ମୁଁ ତୋଠାରୁ ଶୁଣୁଚ୍ଛି, ସେଠିକି ଗଲେ କ'ଣ ରୋଗ ଆରାମ ହେବ ? ତେବେ ଚାଲ ମୁଁ ବି ତୋ ସଙ୍ଗରେ ଯିବି—

ଜଗୁ —ବାଟତ ଜଣାନାହିଁ, ଏଇଠି ଅପେକ୍ଷା କର କେହି ବାଟୋଇ ଗଲେ ପଚାରିବା—ଏଇତ ଦୂରରୁ ଜଣେ କିଏ ଆସୁଚ୍ଛି—

( ସେଠାଳି ବାଡ଼ିଧରି ଗୀତ ଗାଇ ୨ ପ୍ରବେଶ )

( ଗୀତ )

କୃତକର୍ମ ଫଳ ଭୋଗେ ନିତ ନେଇ ମାରେ—
ସୃଷ୍ଟି ମଧ୍ୟେ ଦୃଷ୍ଟିହୀନ କର୍ମନାସା ଛାରେ ।
ସୁଖ ବନ୍ଧୁ ସୁଖ ସାଥୀ ଭୁଲିଗଲେ ଗୋ—
ଦୁଃଖସିନ୍ଧୁ ତରି ଯାଇଁ ବୁଲି ବୁଲେ ଗୋ
ମର୍ମବ୍ୟଥା ମର୍ମେ ମାରି—କର୍ମଲିପି ଅନୁସରି
ନିରୁପ୍ରାୟେ ପ୍ରାଣ ଯାଏ ପଥରେ ଏବେ ହାହାକାରେ ॥

ତର୍କ—ଜଗୁରେ, ଦେଖିଲୁ ଏ ସେଠାଳିର ତୁଣ୍ଡ ନା ?

ଜଗୁ —ଠିକ୍ ତ ମିଶ୍ରେ—ସେଠାଳିର ଖବର ମୁଁ ତ ବହୁକାଳରୁ ପାଇ ନାହିଁ, ସେ କ'ଣ ଅନ୍ଧ ହୋଇଗଲାଣି ?

( ସେଠାଲ ସେହିପରି ଚାଟ ଅଣ୍ଡାଳ ଗୃଲଲା )

ତର୍କ—ହଇହେ, କେଉଁଠୁ ଆସୁଛ ?

ସେଠାଲ—ବାବା, ଅନେକ ଦୂରରୁ ଆସୁଛି, ତୁମେ ଜାଣିବ ନାହିଁ—

ତର୍କ– ତମ ଆଖିକି କଅଣ ଦୃଶ୍ୟ ହେଉନାହିଁ ?

ସେଠାଲ—ନା ବାବା –

ତର୍କ—ତେବେ ଆସିଲ କପରି ?

ସେଠାଲ—ବାବା, ସେ ଦୁଃଖର କଥା କହନା—କେହି ସାହା ଭରସା ନାହିଁ, ଏକମାତ୍ର ପୁଅକୁ ସାଙ୍ଗରେ ଧେନ ଆସୁଥିଲି, ତାକୁ ଗୃରି ଦିନ ତଳେ ସାପ ମାଇଲା—ଏଇ ବାଡ଼ି ଠକ୍ ଠକ୍ କରି ଆସୁଛି—ଏତେକ ବାଟ ଖାଲ ଢ଼ିପରେ ପଡ଼ି ଉଠି ଆସୁଛି—କାଲି ଶୁଣିଥିଲି ଏଇଠି କୋଉଠି ନଙ୍କ ଅଛି—ତା ଆର ପାଖରେ ଜଣେ ସାଧୁ ଥାନ୍ତି; ତାଙ୍କ ହୁକୁମରେ ଅସାଧ୍ୟ ମଧ୍ୟ ସାଧ୍ୟ ହେଉଛି, ମୋତେ ଟିକିଏ ବାଟ ବତେଇ ଦିଅ ବାବା ।

ଜଗୁ—ମିତ୍ରେ, ଏତ ସେଠାଲର ଗୃଲି ଚରଣ—ଏ ନଷ୍ଟପୁ ସେହି, ଆଉ ଟିକିଏ ଖୋଲି ପଗ୍ଗୃରନା –

ତର୍କ – ଯିବତ ହଁ – ତୁମ୍ଭ ଘର କେଉଁଠି ? ଆସୁଛ କେଉଁଠୁ ? ଅନ୍ଧ କଣ ଜନ୍ମରୁ ଥିଲ ନା ହେଲ ?

ସେଠା—କଅଣ ଶୁଣିବ ବାବା ସେ ଦୁଃଖ କଥା ଗୁଡ଼ାକ ସବୁ ମୋର ଅର୍ଜିଲା କର୍ମ, ସେ କଥା ଶୁଣିଲେ ତୁମକୁ ପାପ ଲାଗିବ ମୋତେ ଟିକିଏ ବାଟ କହିଦିଅ, ତୁମର କୋଟି ପରମାୟୁ ହେବ ।

ତର୍କ—ହଉ ଯିବତ, ଟିକିଏ ବସ କଥା କ'ଣ କୁହ ଶୁଣିବା –

ସେଠା – ଶୁଣିବ – ଖାଲି ମନ ଖରାପ ହେବ – ମୋ ଘର କଳଙ୍କ ମୂଳକରେ – ବହୁତ ପାପ କରିଛି; ନିଶା ଖାଇଛି, ମୋର ତିନୋଟି ସାଙ୍ଗୀଥିଲେ, ତାଙ୍କ ସଙ୍ଗରେ ପଡ଼ି ବହୁତ କୁକାର୍ଯ୍ୟ

କରିଛି । ନଶ ଖାଉଥିଲି ଷଣ୍ଡ ନ ଥିଲା କିନ୍ତୁ ତାଙ୍କ ସାଙ୍ଗରେ ପଡ଼ି ପରିବୋଝ, ଭୂଆସୁଣୀଙ୍କି ନଜର ଦେଲି— ତା'ର ଫଳରେ ଆଗି ହରାଇଛି । ଗୋଟିଏ ବୋଲି ପୁଅ, ଏ ଅନ୍ଧକୁ ବାଟ କଢ଼ାଇ ଆଣୁଥିଲା,କାଲି ତାକୁ ଆର ଗାଁରେ ସାପ ମାଇଲା—ମୋ ବଂଶ ବୁଡ଼ିଲା—(କାନ୍ଦିବା)

ଜଗୁ—କେନାଏ—କାନ୍ଦୁଛ କାହିଁକି ? କବନ ଯାକତ ପଡ଼ିଛି—

ସେଠା – କେନାଏ ବୋଲି ଡାକିଲ କିପରି ? କିଏ ତୁମେ ସାନ୍ତେ ?

ଜଗୁ – ଆରେ ମୁଁ ପରା ଜଗୁ ଆଉ ଏ ମିଶ୍ରେ ଆପଣେ –

ସେଠା – କଅଣ – ଜଗୁଭାଇ, ମିଶ୍ର ସାଆନ୍ତେ । କେଉଁଠି ବସିଛ ଟିକିଏ ପାଖକୁ ଆସ—ଜହ୍ନାର ଭାଇ—

ତର୍କ—କେନାଏ –ଆଉ ପାଖକୁ ଡାକ ନାହିଁ—ମୋତେ ବଡ଼ ବେମାର – ଜଗୁବି ଲେଙ୍ଗଡ଼ା – ପାପତ ଆଉ କାହାର ଉଣା ନୁହେଁ—ନର୍କରେ ଓଜନ ହୋଇ ଫଳ ମିଳିଛି, ତେବେ ଚାଲ ସେଠାଲି, ଚାଲ ଜଗୁ, ସେହି ମଠକୁ ଯିବା—ସେଇ ଗୀତଟା ପୁଣି ଗା

(ତର୍କ'ଚଞ୍ଚୁ ଜଗୁ ଆଗରେ ଚାଲିଲେ ପଛରେ ସେଠାଲି ଗୀତ ଗାଇ ଗାଇ ଚାଲିଲା)

ସେଠାଲି— ଗୀତ

କେବା ଏହି ଅସମୟେ ସାହା ହେବ ଗୋ
ଏ ଅଜଣା ଦେଶେ ମୋତେ ବାହା ଦେବ ଗୋ
ପଡ଼ିଗଲେ ନେବ ଧରି— ହାତେ ଦେଇ ଅନ୍ଧ ବାରି
ପାତକୀକୁ ପରଶିବ—ସାନ୍ତ୍ୱନାରେ ସରସିବ
ଦୁଃଖ ଯାତନାରେ । ୬ ।

( ପ ଞ୍ଚ ମ ଦୃ ଶ୍ୟ )

୭ମ ଦୃଶ୍ୟ

ମଗଧର ଦରବାର କକ୍ଷ, ସମୟ ରାତ୍ରୀ ।

(ସୁସଜ୍ଜିତ ରାଜସଭା—ସାମନ୍ତ ପାତ୍ର ମିତ୍ର ଯଥା ସ୍ଥାନରେ ଉପବିଷ୍ଟ, ପ୍ରହରୀ ନିକଟରେ ଠିଆ —ନର୍ତ୍ତକୀମାନଙ୍କର ନୃତ୍ୟ ଗୀତରେ ଦରବାର ମୁଖରିତ )

ଗୀତ

( ଦେଖ ) ବିଜୟ ବିଭବେ ସାଜିଛି ମଗଧ;
ବିକଶିତ ରାଜ ମହିମା ।
ପୁଲକେ ଉଚ୍ଛୁଳ ପବନ ହିଲ୍ଲୋଳେ
ଭାସିଆସେ ବୀର ଗରିମା ॥

ଜୀବନ ମନ ମାତିଯାଏ,
ଅମାନିଶା ଧୀରେ ମିଳାଇ ଯାଏ
ନବସାଜେ ଆଜି ରାଜନ୍ତି ଭୂପତି
ସବୁରେ ଆଶୀଷ ଢ଼ାଳଇ ଟୋ—
ନବ ରବି ଛବି ରଙ୍ଗିମା । ୧ ।

( ଗୀତ ପରେ ନର୍ତ୍ତକୀମାନେ ସମ୍ରାଟଙ୍କୁ ଅଭିବାଦନ ଜଣାଇ ପ୍ରସ୍ଥାନ କଲେ )

ଅଶୋକ—ସାମନ୍ତବର୍ଗ, ଆଜି ଆପଣମାନଙ୍କୁ କାହିଁକି ଆହ୍ୱାନ୍ କରିଛି ଜାଣନ୍ତି ?

୧ମ-ସାମନ୍ତ—ଆଦେଶ କରନ୍ତୁ ରାଜାଧିରାଜ !

ଅଶୋକ—ଭାରତର ବର୍ତ୍ତମାନ ରାଜନୈତିକ ଅବସ୍ଥା ଦେଖୁଛନ୍ତି ତ ?
ପୁଣ୍ୟଶ୍ଳୋକ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କର ସେହି ବିଶାଳ ସାମ୍ରାଜ୍ୟ
କାହିଁ ?

୨ୟ-ସାମନ୍ତ—ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ଜନପଦରେ ପରିଣତ ହୋଇ
ଦେଶର ବହୁତ କ୍ଷତି କରୁଛି—

ଅଶୋକ – କେବଳ କ'ଣ ସେତିକି ? ଏହି କ୍ଷୁଦ୍ର କ୍ଷୁଦ୍ର ରାଜ୍ୟହିଁ ଏ
ଦେଶର ଜାତୀୟତା ସମ୍ପାଦାନରେ ବିଘ୍ନ, ଏକତା ଓ
ଦେଶାତ୍ମବୋଧ ଜନ୍ମାଇବାର ବିରାଟ ଅନ୍ତରାୟ ।

୧ମ-ସାମନ୍ତ—ଏହା ଅଭ୍ରାନ୍ତ ସତ୍ୟ ମହିମା—

ଅଶୋକ -- ଏହାର ଯୋଗୁ ଶୌର୍ଯ୍ୟ, ବୀର୍ଯ୍ୟ ଓ ସଭ୍ୟତାରେ ଜଗତ,
ଶ୍ରେଷ୍ଠ ହୋଇ ଭାରତମାତାର ଏ ହୀନ ଦଶା—ସବୁଠିହିଁ
କେବଳ ହିଂସା, ଦ୍ୱେଷ, ଜଡ଼ତା, କେବଳ କ୍ଷୁଦ୍ର ସ୍ୱାର୍ଥର
ସଂଘର୍ଷ—ଆତ୍ମ ପ୍ରତାରଣା—

୨ୟ ସାମନ୍ତ—ଅଭିଶାପଗ୍ରସ୍ତ ଭାରତ ଓ ଭାରତବାସୀର ଦୁର୍ଭାଗ୍ୟ—

ଅଶୋକ—କେବଳ ଭାଗ୍ୟକୁ ଦୋଷିଲେ ଚଳିବ ନାହିଁ କି ନିଶ୍ଚେଷ୍ଟ
ହୋଇ ବସି ରହିଲେ ଆର୍ଯ୍ୟ ମହିମାର ସେ ଅପୂର୍ବ ଅତୀତ
ଗରିମା ଫେରି ଆସିବ ନାହିଁ—ସେଥି ନିମିତ୍ତ ସର୍ବସ୍ୱ ପଣରେ
ସ୍ୱଦେଶ ବତ୍ସଳତାର ପରାକାଷ୍ଠା ଦେଖାଇବାକୁ ପଡ଼ିବ—

୧ମ-ସାମନ୍ତ—ମହାରାଜାଙ୍କର ନିର୍ଦ୍ଦେଶ ଆମ୍ଭମାନଙ୍କର ଧର୍ମ, ଆଦେଶ,
ବେଦବାକ୍ୟ—କହନ୍ତୁ ସମ୍ରାଟ କ'ଣ କରିବୁ ?

ଅଶୋକ—ଏହି ଭେଦାଭେଦ ବିନଷ୍ଟ ଦେଶକୁ ପୁଣି ଏକ ମହା-
ଦେଶରେ ପରିଣତ କରିବାକୁ ହେବ—ଏହି ସ୍ୱାର୍ଥାନ୍ଧ ହୀନ-

ତେଣୁ ଭାରତକୁ ପୁଣି ମହାକାଙ୍କ୍ଷାସୂତ୍ରର ଉନ୍ମାଦନାରେ ଉଦ୍ଦୀପ୍ତ କରିବାକୁ ହେବ—ଏହି ସବୁ କ୍ଷୁଦ୍ର ରାଜ୍ୟ ଭାଙ୍ଗି ଏକ ବିଶାଳ ରାଜ୍ୟର ପ୍ରତିଷ୍ଠା କରିବାକୁ ହେବ—

୨ୟ ସାମନ୍ତ—ମହାମହିମ ସମ୍ରାଟ, ଏହି ମହାବ୍ରତ ପାଳନରେ କିଏ ଅବା ମଣିମାଙ୍କର ଅନୁଗାମୀ ନ ହେବ—ଅତୀତର ଉଜ୍ଜ୍ୱଳ ସ୍ମୃତି କାହାର ପ୍ରାଣରେ ଅବା ଆନନ୍ଦ ଝଙ୍କାର ନ ଉଠାଇବ ? ଜାତିର ମହତ୍ତ୍ୱ ଅର୍ଜନରେ କିଏ ଅବା ମାନବତ୍ୱର ଶ୍ରେଷ୍ଠ ଅଞ୍ଜଳି ଦେବାକୁ କୁଣ୍ଠିତ ହେବ ? ଆମ୍ଭମାନଙ୍କର ମଧ୍ୟ ସେହି ଏକ ବ୍ରତ, ଏକ ଆଶା, ସେହି ଏକ ଆକାଂକ୍ଷା, ଏକ ଉଚ୍ଛ୍ୱାସ—ମୃତ୍ୟୁର ସମ୍ମୁଖୀନ ହୋଇ ଆତ୍ମପ୍ରାଣରେ ତର୍ପଣ କରି ଦେଶ ମାତୃକାର ଜଡ଼ପିଣ୍ଡରେ ପ୍ରାଣ ପ୍ରତିଷ୍ଠା କରିବାକୁ ହେବ—ହୃତପିଣ୍ଡର ପ୍ରତ୍ୟେକ ତନ୍ତ୍ରୀ ଛିନ୍ନ ଭିନ୍ନ ହୋଇଗଲେ ମଧ୍ୟ ସେହି ଏକ ସ୍ୱରର ଝଙ୍କାରରେ ନିଜକୁ ଅନୁପ୍ରାଣିତ କରିବାକୁ ହେବ, 'ତ୍ୱଂହି ପ୍ରାଣାଶରୀରେ'—

୧ମ-ସାମନ୍ତ—ଆଦେଶ କରନ୍ତୁ ସମ୍ରାଟ, ମଗଧର ବିପୁଳ ବାହିନୀର ବିଜୟ ସଙ୍ଗୀତର ପ୍ରାଥମିକ ଉଦ୍‌ବୋଧନ କେଉଁ ରାଜ୍ୟରେ କରିବେ—

( ଉଦ୍‌ଭ୍ରାନ୍ତ ଭାବେ ବୀରର ପ୍ରବେଶ )

ବୀର—କଳିଙ୍ଗରେ ତାହାର ପ୍ରାଥମିକ ଉଦ୍‌ବୋଧନ ହେଉ ମହାରାଜ !

ଅଶୋକ—କିଏ ତୁମ୍ଭେ ଉଚ୍ଛୃଙ୍ଖଳ ଉନ୍ମାଦ ଯୁବକ ?—

ବୀର—ଉଚ୍ଛୃଙ୍ଖଳ, କିନ୍ତୁ ଉନ୍ମାଦ ନୁହେଁ ସମ୍ରାଟ—କେଉଁ ରାଜ୍ୟକୁ

ପ୍ରଥମେ ଅଭିଯାନ କରିବେ ପ୍ରଶ୍ନ ଉଠିଥିଲା, ମୁଁ ତାହାର ସୂଚନା ଦେଉଛି, ଧୃଷ୍ଟତା ମାର୍ଜନା କରନ୍ତୁ ।

ଅଶୋକ—ଯୁବକ, ତୁମ୍ଭର ପରିଧେୟ ଜୀର୍ଣ୍ଣ ଶୀର୍ଣ୍ଣ ହେଲେହେଁ ତୁମ୍ଭ କଥାରେ ସିଂହର ଶକ୍ତି ନିହିତ ଅଛି, କହ କିଏ ତୁମ୍ଭେ ?

ବୀର—ଏ ହତଭାଗ୍ୟ କଳିଙ୍ଗର ଭୂତପୂର୍ବ ସେନାପତି ଶତ୍ରୁଦମନଙ୍କ ଦୌହିତ୍ର ।

ସମସ୍ତେ—ସ୍ୱନାମଖ୍ୟାତ ବୀର ଶତ୍ରୁଦମନଙ୍କର ଦୌହିତ୍ର !

ବୀର—ବିଶ୍ୱାସ କରି ପାରୁନାହାନ୍ତି—ମୋର ଏ ଦୀନହୀନ ଦଶା ଦେଖି କିଏ ଅବା ବିଶ୍ୱାସ କରିବ ?

୧ମ-ସାମନ୍ତ—(ଦୃଢ଼ଭାବେ) ଏ ରଙ୍ଗାଳୟ ନୁହେ ଯୁବକ, ମଗଧ-ପତିଙ୍କ ମନ୍ତ୍ରଣା ମଣ୍ଡପ ।

ବୀର—ମନ୍ତ୍ରଣା ମଣ୍ଡପ ଜ୍ଞାନରେତ ଏଠାକୁ ଆସିଛି, ନଚେତ୍ ଜଗତପତିଙ୍କର ରଙ୍ଗାଳୟକୁ ମଧ୍ୟ ମୁଁ ତୁଚ୍ଛ ଜ୍ଞାନ କରେ ।

( ସାମନ୍ତମାନେ ବିରକ୍ତିରେ ବୀରକୁ କଟାକ୍ଷ କରିବାରୁ ଅଶୋକ ଆଖିଠାରି ବାରଣ କଲେ ଓ କହିଲେ )

ଅଶୋକ—ଆଗେ ତୁମ୍ଭର ସବିଶେଷ ପରିଚୟ ଦିଅ—ଯେଉଁ ବୀର-ଶ୍ରେଷ୍ଠ ସେନାପତିଙ୍କର ସହାୟତାରେ କଳିଙ୍ଗ ଆଜି ସାରା ଦାକ୍ଷିଣାତ୍ୟର ସର୍ବଶ୍ରେଷ୍ଠ ରାଜ୍ୟ, ସେହି ସମର କୁଶଳୀ ଯୋଦ୍ଧାର ବଂଶଧର ହୋଇ ତୁମର ଏ ଅକିଞ୍ଚନ ଅବସ୍ଥା କାହିଁକି ?

ବୀର—କାହିଁକି ? ବିଶ୍ୱାସ—ଘାତକ କଳିଙ୍ଗେଶ୍ୱରଙ୍କର କୃତଘ୍ନତା ଫଳରୁ—

ଅଶୋକ—ତେବେ କ'ଣ ସେନାପତି ଶତ୍ରୁଦମନ ଆଜି—

ବୀର—ଆଜି ଇହଧାମରେ ନାହାନ୍ତି—ସେହି ସ୍ୱୈରିଣୀ, କୃତଘ୍ନ ରାଜା—ରାଣୀର କୁମନ୍ତ୍ରଣାରେ ସେନାପତିଙ୍କର ଶେଷ ସନ୍ତାନକୁ

ପ୍ରାଣଦଣ୍ଡ ଦେଇ ସେନାପତିଙ୍କୁ ହସ୍ତବହ୍ନୀନ କରି ନାନାବି ଲାଞ୍ଛନା ଦେଇଥିଲି । ଅଶୀତିପର ବୃଦ୍ଧ ନିଜର ଏକ ମାତ୍ର କନ୍ୟାର ସନ୍ଧାନରେ ଆସି, ସେହି ଅଭାଗିନୀ କନ୍ୟାର ମୃତ୍ୟୁ ସମ୍ବାଦ ପାଇ ଗୟା କ୍ଷେତ୍ରରେ ପ୍ରାଣ ତ୍ୟାଗ କରିଅଛନ୍ତି । ତାଙ୍କର ସେହି କନ୍ୟା, ଏ ହତଭାଗାର ମାତା କିନ୍ତୁ ଦୁର୍ଦୈବ ବଶତଃ "ଆଜୀବନ ଭିକ୍ଷୁ ଗୃହରେ ପାଳିତ । ଏପର୍ଯ୍ୟନ୍ତ ବିଶ୍ୱାସଘାତକର ଶାସ୍ତି ହୋଇନାହିଁ ; କୃତଘ୍ନତାର ପ୍ରତିଶୋଧ ଘଟିନାହିଁ, ଶରଣାଗତକୁ ଆଶ୍ରୟ ଦେଇ ମହାରାଜ, କଳିଙ୍ଗ ଅଭିମୁଖରେ ଅଭିଯାନ କରନ୍ତୁ , ମାତାମହଙ୍କର ଅନ୍ତିମ ଅନୁରୋଧ ପାଳିବାରେ ମୋତେ ସୁବିଧା ଦିଅନ୍ତୁ ସମ୍ରାଟ !

୨ୟ-ସାମନ୍ତ — ତୁମେ ଯେ ତାଙ୍କ ଦୌହିତ୍ର, ତାହାର ପ୍ରମାଣ, ସାକ୍ଷୀ

ବୀର — ସାକ୍ଷୀ, ମୋର ଅନ୍ତରାତ୍ମା, ମୋର ଧର୍ମଶିକ୍ଷା —

୧ମ-ସାମନ୍ତ — ତୁମେ ଯଦି ମିଛ କହୁଥାଅ । ଅଜ୍ଞାତ କୁଳଶୀଳକୁ ଆଶ୍ରୟ ଦେବା ରାଜଧର୍ମ ନୁହେଁ —

ବୀର — ରାଜଧର୍ମ ନ ହୋଇପାରେ — ମନୁଷ୍ୟର ଧର୍ମ ଏବଂ କ୍ଷତ୍ରିୟର କର୍ତ୍ତବ୍ୟ ତ ?

୧ମ-ସାମନ୍ତ — ଆମ୍ଭେମାନେ ଅନ୍ୟ ଏକ ଉଦ୍ଦେଶ୍ୟରେ ବର୍ତ୍ତମାନ ଅନୁପ୍ରାଣିତ, ତୁମ୍ଭଙ୍କୁ ଆଶ୍ରୟ ଦେଲେ ସେଥିରେ ବିଘ୍ନ ଘଟିପାରେ-

ବୀର — ସେହିକଥା କହନ୍ତୁ, ମୋର ଧାରଣା ଥିଲା ମହାରାଜ ଅଶୋକ ବଡ଼ ନିର୍ଭୀକ, ଜଣକର ଚେଷ୍ଟା ଚରିତ୍ର ନେଇ ସନ୍ଦେହ କରିବା ତାଙ୍କର ପ୍ରକୃତି ବିରୁଦ୍ଧ, ଆଉ ତାଙ୍କର ସାମନ୍ତବର୍ଗ ଅଦ୍ଭୁତ କର୍ମୀ କିନ୍ତୁ ତାହା ନୁହେଁ —

୨ୟ ସାମନ୍ତ—ଏ ଯୁଦ୍ଧରେ ତୁମ୍ଭର କ'ଣ ଲାଭ ହେବ ? ଖାଲି ପ୍ରତିହିଂସା—

ବୀର—ହିଂସା କି ପ୍ରେମ ଜାଣେନା, ମୁଁ ଚାହେଁ ପ୍ରତିଶୋଧ— [ଅଶୋକଙ୍କୁ ଚାହିଁ ହାତଯୋଡ଼ି ) ବୀରକେଶରୀ ସମ୍ରାଟ ! ବଡ଼ ଆଶାରେ ମହାରାଜାଙ୍କର ଆଶ୍ରୟ ପ୍ରାର୍ଥୀ ହୋଇଛି— ପ୍ରପୀଡ଼ିତକୁ ସାହାଯ୍ୟ ଦେବା କ୍ଷତ୍ରିୟର ଧର୍ମ ସମ୍ରାଟ ? (ଆଣ୍ଠୁମାଡ଼ି ବସିବା)

ଅଶୋକ—ଉଠ,ବୀର ଯୁବକ । ସାମନ୍ତ ବର୍ଗ । ଆଜିଠାରୁ କଳିଙ୍ଗ-ବିଜୟ ଅଶୋକର ସର୍ବ ପ୍ରଧାନ ସାଧନା—ଯଥାଶୀଘ୍ର ପଚିଶ ହଜାର ମୈଥିଳୀ ସୈନ୍ୟ ନେଇ କଳିଙ୍ଗ ଆକ୍ରମଣର ଆୟୋଜନ କର, ଆବଶ୍ୟକ ହେଲେ ମଗଧ ଜନଶୂନ୍ୟ କରି କଳିଙ୍ଗ ବିଜୟରେ ଅଗ୍ରସର ହେବାକୁ ହେବ । ମୁଁ ତୁମ୍ଭଙ୍କୁ ଆଶ୍ରୟ ଦେଲି ଯୁବକ । ତୁମ୍ଭେ ହେଲ ଏ ବୀରବାହିନୀର ଅଗ୍ରଣୀ—( ସାମନ୍ତମାନେ ପରସ୍ପର କଟାକ୍ଷ କରିବା ) ମାଗଧୀର ବୀର୍ଯ୍ୟ ଏବଂ କଳିଙ୍ଗର ଶୌର୍ଯ୍ୟରେ କଳିଙ୍ଗର ବିଜୟ ସାଧିତ ହେବ—ଆସ ଯୁବକ । ତୁମ୍ଭଙ୍କୁ ଥରେ ଆଲିଙ୍ଗନ କରେ—

ସମସ୍ତେ—ଜୟ ମହାରାଜ ଅଶୋକଙ୍କର ଜୟ—

( ଯ ବ ନି କା ପ ତ ନ )

# ତୃତୀୟ ଅଙ୍କ

## ୧ମ ଦୃଶ୍ୟ

( ସ୍ଥାନ—ମଗଧ ଶିବିର । ସମୟ ସନ୍ଧ୍ୟା । ସମଗ୍ର ଶିବିର ବିଧ୍ୱସ୍ତ—ପରାଜିତ ମାଗଧିସୈନ୍ୟ ପଳାଇ ଯାଇଛନ୍ତି । ଶିବିରରେ ନାନାବିଧ ଯୁଦ୍ଧ ସମ୍ଭାର ବିକ୍ଷିପ୍ତ ହୋଇ ପଡ଼ିଛି । ଅବଶିଷ୍ଟ ୩/୪ ଜଣ ସୈନ୍ୟ ମଧ୍ୟ ପଳାଇବା ପାଇଁ ଉଦ୍ୟତ , ଜଣେ ସୈନିକ ଭୀତ ତ୍ରସ୍ତ ଭାବେ ଆଗବଢ଼ି ପଛକୁ ଚାହିଁ ସଙ୍ଗୀଙ୍କୁ ଡାକୁଛି ଦୂରରୁ ଶୁଭୁଛି ଜୟ ଭେରୀ — )

୧ମ-ସୈନିକ—ପଳାଇ ଆରେ ଭାଇ ପଳାଇଆ—କଳିଙ୍ଗ ସୈନ୍ୟ ସଙ୍ଗେ କିଏ ଯୁଦ୍ଧ କରିବ ।

( ଏହି ସମୟରେ ବୀର ପଛଆଡ଼ୁ ଆସି ଘୃଣାଭରେ ହାତ ବଢ଼ାଇ କହିଲେ )

ବୀର — ଯାଅ—ଚାଲିଯାଅ—କାପୁରୁଷ ପ୍ରାଣରଙ୍କ, ଏଇ ତୁମର ବୀର ଆସ୍ଫାଳନ—ତୁମ୍ଭେ ନା କାହିଁ ସ୍ୱଦେଶ ଗୌରବ ଅକ୍ଷୁର୍ଣ୍ଣ ରଖିବାକୁ ଜୀବନ ପଣ କରନ୍ତ—ତା ନ କରି ଦେଶର, ଜାତିର ଓ ରାଜାର ଆତ୍ମମର୍ଯ୍ୟାଦାରେ କଳଙ୍କକାଳି ବୋଳି ଦେଉଛ, ଧିକ୍ ତୁମ୍ଭଙ୍କୁ—ଏଠୁଁ ପଳାଇ କ'ଣ ଚିର ଦିନ ମୃତ୍ୟୁକୁ ଫାଙ୍କି ଦେବ ?

ଜନେକ ସୈନିକ—ପଳାଇବୁ ନାହିଁତ କଣ ଛୁଡ଼ାହୋଇ ତୁଣ୍ଡିଠାକୁ ପ୍ରାଣ ଦେବୁ, ଏଠା କଅଣ ଏଡ଼େ ତୁଛ—ଶୁଣୁଛ କ'ଣ ଭାଇ ଚାଲ ( ଅଗ୍ରସର )

ବୀର —ହଉ ଯାଅ—ତୁମ୍ଭ ଭିତରେତ ହିନ୍ଦୁ ଶକ୍ତି ମୃତ ହେଲାଣି—ବିରତ୍ୱର ସର୍ବଗ୍ରାସୀ ଉନ୍ମାଦନାତ ତୁମର ନାହିଁ, ବିଜୟ ମାଦକର ମୋହନ ମଦିରା ତୁମେ କାହୁଁ ଆସ୍ୱାଦନ କରିବ, ଯାଅ—ଚାଲିଯାଅ [ସୈନ୍ୟଙ୍କର ପ୍ରସ୍ଥାନ]

( ସସୈନ୍ୟ ଶିଳାଦିତ୍ୟଙ୍କ ପ୍ରବେଶ ଓ ବୀରଙ୍କୁ ଦେଖି ସୈନ୍ୟମାନେ ଦୁଇ ହାତ ଧରି ପକାଇଲେ, ପଳାୟିତ ମଗଧ ସୈନ୍ୟଙ୍କୁ ଦେଖାଇ ଶିଳାଦିତ୍ୟ କହିଲେ )

ଶିଳାଦିତ୍ୟ —କି ଯୁବକ ଏହି ଖିରୁ ଗୁଡ଼ାଙ୍କୁ ଆଣି କଳିଙ୍ଗ ଜୟ କରି-ବାର ଆସ୍ପର୍ଦ୍ଧା ? ସୈନିକ—ପାଷାଣ୍ଡର ମୁଣ୍ଡ କାଟି ପକାଅ--

ବୀର —ମୁଣ୍ଡ କାଟିବ ? କାଟ [ ମୁଣ୍ଡ ବଢ଼ାଇ ଦେବା ]

ଶିଳା —କଅଣ, ମୃତ୍ୟୁକୁ ଭୟ ନାହିଁ—
ବୀର — ତା କ'ଣ ଆଜ ବୁଝିଲ ? ଆଉ ବିଳମ୍ବ କାହିଁକି ଆସ ସେନକ-
(ସୈନକକୁ ଗୃହ୍ୱ କହିଲେ ଓ ସେ ଅଗ୍ରସର ହେଲା )
ଶିଳାବତୀ—ଅପେକ୍ଷାକର – ମୃତ୍ୟୁ ଯଦି ଏହାର ଏତେ ଆକାଙ୍କ୍ଷାର ବିଷୟ ତେବେ ତାର ସେ ଦଣ୍ଡ ନିଷ୍ପ୍ରୟୋଜନ —ଶସ୍ତ୍ର ଶସ୍ତ୍ର ଇ ରହୁ—ବରଂ ତାଙ୍କୁ ମୁକ୍ତ ଦିଅ—ଯାଉ ସେ ତାହାର ଉଦ୍ଧତ ଅଶୋକକୁ କହୁ—କଳିଙ୍ଗ ବୀର ଭୂମୀ—କଳିଙ୍ଗ ଜୟକରି-ବାକୁ ଆଜ ସୁଦ୍ଧା ପୃଥିବୀରେ ପୁରୁଷ ଜନ୍ମି ନାହାନ୍ତି—
( ସୈନ୍ୟମାନେ ବୀରକୁ ଛାଡ଼ି ଦେଲେ )

ଯା'— ବାତୁଳ—ପ୍ରାଣ ନେଇ ପଳେଇ ଯା —ରଣ ଲାଳସା ଯଦି ମନରେ ଥାଏ, କଳିଙ୍ଗ ବୀରତ୍ୱ ପରୀକ୍ଷା କରିବାକୁ ଯଦି ଆଗ୍ରହ ଜନ୍ମେ, ତେବେ ତୋର ଆଶ୍ରୟଦାତାକୁ କହିବୁ—ଥରେ ନୁହେଁ —ଚାହିଲେ ସହସ୍ର ଥର ଆସି କଳିଙ୍ଗ ସେନାର ଅସି ଧାର ପରୀକ୍ଷା କରିଯାଉ—
ବୀର —[ଅତିଶୟ କ୍ଷୋଭରେ] ନା ବିଜେତା—ମୋତେ ମୃତ୍ୟୁଦିଅ ତୁମ୍ଭର ଦୟାଦତ୍ତ ଜୀବନଠାରୁ ମୃତ୍ୟୁ ମୋର ଶ୍ରେୟସ୍କର—
ଶିଳା—ତୋର ଅସ୍ପର୍ଦ୍ଧାତ କମ୍ ନୁହେଁ—ନୋହିଲେ ଏହି ଖାରୁ ନୁଡ଼ାଙ୍କୁ ଘେନି ଆସିଥାନ୍ତୁ କଳିଙ୍ଗ ଜୟ କରିବାକୁ—ସମସ୍ତ ଆର୍ଯ୍ୟାବର୍ତ୍ତ ଜୟ ଲାଭକରି ସମ୍ରାଟ ଚନ୍ଦ୍ରଗୁପ୍ତ ଯାହାକୁ ଡ଼ରି ରହିଲେ, ତୁ ଆସିଛୁ ସେହି କଳିଙ୍ଗ କେଶରୀକୁ—
ବୀର –( ଅତି ଦୁଃଖରେ ) ଆଉ ଲଜ୍ଜା ଦିଅ ନା – ହତ୍ୟାକର ।
ଶିଳା – ଠିକ୍ ହୋଇଛି – ନିଜର ଜୀବନରେ ଧିକ୍କାର ଆଣି ଜୀଇଁବା ମୃତ୍ୟୁଠାରୁ ବେଶୀ ମର୍ମଭେଦୀ – ଯା'ଦୁରାଗ୍ରହୀ – ତୋର ପ୍ରଭୁକୁ କହିବୁ – ଶକ୍ତିଥିଲେ ନିଜେ ଆସୁ – ଆହୁରି କହିବୁ

ତୋ'ର ସେ ଅଶୋକ ରାଜାକୁ—ସୁପ୍ତସିଂହକୁ ଜାଗ୍ରତ କରି
ବିରକ୍ତ କରି କେଉଁ ରକ୍ଷା ପାଇପାରେ—କିନ୍ତୁ କଳିଙ୍ଗ-
କେଶରୀଙ୍କୁ ଉତ୍ତ୍ୟକ୍ତ କରି ପୃଥିବୀର ପରପ୍ରାନ୍ତରେ ଲୁଚିଲେ
ମଧ୍ୟ ରକ୍ଷାନାହିଁ—ଚାଲ ସୈନିକ—( ପ୍ରସ୍ଥାନ )

ବୀର —(ସ୍ୱଗତଃ) ଓଃ-ମୃତ୍ୟୁବି ମିଳିଲା ନାହିଁ—ମୃତ୍ୟୁ କ'ଣ ବୀରକୁ
ଭୁଲିଗଲା—କୁଆଡ଼େ ଯିବି—କାହାକୁ ମୁହଁ ଦେଖାଇବି—
( ଚିନ୍ତାକରି ) ହେଉ ପଛେ ଆତ୍ମହତ୍ୟା—ଏ ତୁଚ୍ଛ ପ୍ରାଣ
ବାହାରି ଯାଉ—
(ଛୁରୀ ଉଠାଇବା ବେଳେ ସନ୍ନ୍ୟାସୀର ପ୍ରବେଶ ଓ ଧରିବା)

ସନ୍ନ୍ୟାସୀ—ପ୍ରାଣ କେବେ ତୁଚ୍ଛ ନୁହେଁ ବୀର—ଏହା ବିଧାତାର
ମହାଦାନ—ବୀରତ୍ୱ ବରଣ କରିଛ—ବୀର ପରି କାର୍ଯ୍ୟକର
ବୀର—( ବିହ୍ୱଳ ହୋଇ ) କିଏ ଗୁରୁଦେବ ? ଅନ୍ତର୍ଯାମୀ ଆପଣତ
ସବୁ ଜାଣନ୍ତି—ଯେବେ ଅଜାଚିତରେ ଦୟା କରିଛନ୍ତି—
ବାଧା ନ ଦେଇ ପାଦଧୂଳି ଦିଅନ୍ତୁ—
ସନ୍ନ୍ୟାସୀ—ନର ହୋଇ ନରକର ପଥିକ ତୁ—ବାଧା ଦେବି ନାହିଁ ?
ଧୈର୍ଯ୍ୟଧର ବୀର—

ବୀର —ଧୈର୍ଯ୍ୟ ଧରିବି—ସର୍ବସ୍ୱ ହରାଇ—ଶତ୍ରୁ ପଦାଘାତ ଖାଇ
ଧୈର୍ଯ୍ୟ ଧରିବି ?
ସନ୍ନ୍ୟାସୀ—ଅଧୈର୍ଯ୍ୟ ହେଲେ କ'ଣ ତାହା କଟିଯିବ, ବାତୁଳ; ଏହା
ଶକ୍ତିର ଅପ ବ୍ୟବହାର—ସତ୍ୟର ଅପୌରୁଷଖ୍ୟାତି—ଜୀବନ
କ'ଣ ଏତେ ମୂଲ୍ୟହୀନ ବୀର ? ମହାକର୍ତ୍ତବ୍ୟ ତୋ ସମ୍ମୁଖରେ,
ବୀର—କିଂ କର୍ତ୍ତବ୍ୟ ବିମୂଢ଼ ମୁଁ—ଉପାୟହୀନର ଆଉ ଗତି କ'ଣ ?
ସନ୍ନ୍ୟାସୀ—ଗତି ? ଗତି ଆତ୍ମହତ୍ୟା ନୁହେଁ—ଆତ୍ମ ପ୍ରତିଷ୍ଠା—ହତାଶ
ହୃଦୟରେ ପୁଣି ନବୀନ ଆଶାର ସଞ୍ଚାର—

ବୀର —ଅସମ୍ଭବ—

ସନ୍ନ୍ୟାସୀ—ଅସମ୍ଭବ ଶବ୍ଦ କାପୁରୁଷର ସମ୍ବଳ । ପ୍ରତିଜ୍ଞା ମନେଅଛି ବୀର ?

ବୀର—ଥାଇ କଅଣ ହେବ—ସବୁ ଯେ ସରିଛି ଗୁରୁ—

ସନ୍ନ୍ୟାସୀ—କିଏ କହିଲା ସବୁ ସରିଛି, ତୋର ସତ୍ୟତ ସଙ୍ଗେ ୨ ଅଛି;

ବୀର ଆଉ କ'ଣ କରିପାରେ—କହନ୍ତୁ ଗୁରୁଦେବ ! ଉପାୟ କଣ ?

ସନ୍ନାସୀ—ଉପାୟ—ଚେଷ୍ଟା ଉପରେ ଚେଷ୍ଟା । ଏହି ଜଙ୍ଗଲ ରଙ୍ଗିଣୀକୁ ଅନା—ବର୍ଷପରେ ବର୍ଷ ଧରି କେତେ ବାଧାବିଘ୍ନ ଅତିକ୍ରମ କରି ସେ ତାର ଲକ୍ଷ ଆଡ଼କୁ ଧାଇଁଛି—ଆଉ ଚେତନ ତୁ—ମାନବ ହୃଦୟ ତୋ'ର—ତୋହ ଲକ୍ଷ ତୁ ଏତେ ଶୀଘ୍ର ଭୁଲିଯାଉଛୁ—ପ୍ରତିଜ୍ଞା କଲାବେଳେ ଏ ସବୁ ମନେ କରିବାର ଥିଲା—ତା' ନ କରି କାର୍ଯ୍ୟକ୍ଷେତ୍ରରେ ହତାଶ ହୋଇ ଆତ୍ମହତ୍ୟା କରିବା, ଦେବ ଦାନବ କି ମାନବ କାହାର ଉଚିତ ନୁହେଁ—ଆ ବତ୍ସ ମୋର, ସଙ୍ଗରେ ଆ—

(ବୀରକୁ ଟାଣି ନେଇଯିବା ଓ ଅନ୍ତରାଳରୁ ସଙ୍ଗୀତ ସ୍ୱର)

### ୨ୟ ଦୃଶ୍ୟ

ସ୍ଥାନ—ଆଶ୍ରମ, ସମୟ ସନ୍ଧ୍ୟା ।

(ଜଗୁ, ସେଠାଲି, ତର୍କଚଞ୍ଚୁ—ଆଶ୍ରମ ଦ୍ୱାରେ ପହଞ୍ଚି)

ତର୍କ—ମଠରେ କିଏ ଅଛ ବା ବା !

ସେଠା—ଅନ୍ଧକୁ ଦୟାକର ବାବା ।

ଜଗୁ—କିଏ ଅଛ । ରକ୍ଷାକର ବାବା ।

ଚଞ୍ଚଳା—(ବାହାରକୁ ଆସି) କିଏ ତୁମ୍ଭେମାନେ, କେଉଁଠୁ ଆସିଛ ?
କଅଣ ହୋଇଛି ?

ତର୍କ—[ଗୋଡ଼ତଳେ ପଡ଼ି] ଆମେ ଅନେକ ଦୂରରୁ ଆସିଛୁ ମା—
କଳିଙ୍ଗ ଦେଶରୁ—ଶୁଣିଲୁ ଏଠି ଜଣେ ସାଧୁ ଥାନ୍ତି—ତାଙ୍କ
କଥାରେ ଅସାଧ୍ୟ ସାଧନ ହୁଏ, ତାଙ୍କ ଦର୍ଶନ କଅଣ ଟିକିଏ
ମିଳିବ ନାହିଁ ମା !

ଚଞ୍ଚଳା—ସେତ ମଠରେ ନାହାନ୍ତି—ତେବେ ଅଳ୍ପଦିନେ ଫେରିବେ
ତୁମ୍ଭେମାନେ ଆସ—ଏଇଠାରେ ଆଶ୍ରୟ ନିଅ—

ତର୍କ—ବାଟ ଚାଲି ଚାଲି ଗୋଡ଼ ପଥର ପାଲଟି ଗଲାଣି ମା, ଆଉ ଉଠି
ହେଉ ନାହିଁ ।

ସେଠା—ତିନଦିନ ହେଲା ପେଟରେ ଗଣ୍ଡାଏ ଦାନା ପଡ଼ି ନାହିଁ ମା—

ଜଗୁ—ମନ୍ଦାଏ ପାଣି ମା—ତଣ୍ଟି ଶୁଖିଯାଉଛି—

ଚଞ୍ଚଳା—ଆହା କେତେ କଷ୍ଟ—ଆଗୁ ମୁଁ ଆଣି ଦେଉଛି—(ଭିତରୁ
ପାଣି ଆଣି ମିଶ୍ର ପାଖକୁ ଯାଇ) ଆହା ତୁମ୍ଭ ହାତରେତ
ବଡ଼ ବେଶୀ ଘା ହୋଇଛି ପିଇ ପାରିବ ନାହିଁ—ରହ ମୁଁ
ପିଆଇ ଦିଏ—

ତର୍କ—[ଚଞ୍ଚଳା] ନାହିଁ ମା ମୋତେ ଛୁଅଁ ନାହିଁ—ଦେଖୁ ନାହଁ—
ମୋ ଦେହରୁ କିପରି ଦୁର୍ଗନ୍ଧ ବାହାରୁଛି—ଏ ବଡ଼ ଅସାଧ୍ୟ
ରୋଗ—ଶତ୍ରୁକୁ ମଧ୍ୟ ଭଗବାନ ଏ ରୋଗ ନ ଦିଅନ୍ତୁ ।

ଚଞ୍ଚଳା—(ବିକଳରେ) ନାହିଁ ବାପ ! କିଛି ଚିନ୍ତା ନାହିଁ—ସାଧୁଙ୍କ
ଦୟାରୁ ମୋର କିଛି ଆଶଙ୍କା ନାହିଁ—ଏଇତ ମୋର
ସେବକନା କାମ—ଏଥିରେ ମୋର ବଡ଼ ଆନନ୍ଦ—

ତର୍କ—କିଏ ମା ତୁମ୍ଭେ—ପାପୀ ପ୍ରାଣରେ ଅମୃତ ଢ଼ାଳୁଛ, ତୁମ୍ଭେ
ମାନବୀ ନା ଦେବୀ ?—

ଚଞ୍ଚଳା—ଦେବୀ ନୁହେ ବାବା ମାନବୀ—ଦେବୀ ବୋଲି କହି
ମୋର ପାପ ବଢ଼ାଅ ନା—

ତର୍କ—ତୁମେ ଦେବୀ ନୁହ ତ କଏ ଦେବୀ ମା—

ଚଞ୍ଚଳା—ଯଦ ତୁମ୍ଭେ ମୋର ଗତଜୀବନ କଥା ଜାଣନ୍ତ, ତେବେ ମୋତେ ଘୃଣା କରନ୍ତ—ମୋର ଏତିକି ଭରସା ଯେ ମୁଁ ମହାପୁରୁଷଙ୍କ ଆଶ୍ରା ପାଇଛି ।

ଜଗୁ—ତେବେ କଅଣ ମା, ଆମର ସଂସାରରେ ଆଶ୍ରା ଅଛି ?

ଚଞ୍ଚଳା—ସେ ମହାପୁରୁଷଙ୍କ ପାଖରେ କେହି ନରାଶ୍ରୟ ନୁହନ୍ତ—

ସେଠା—ଆମେ ଯେ ବଡ଼ ପାତକୀ ମା—ଆମଠୁ ବଳି ଦୁନଆରେ ପାପୀ ନାହାନ୍ତ—

ଚଞ୍ଚଳା—ମୋଠୁ ବଳି ତୁମ୍ଭର କଅଣ ପାପ ବେଶୀ ? ମୁଁ ଜଣେ ଗୃହସ୍ଥର ଝିଅ—ଗୃହସ୍ଥର ବୋହୂ—ମୋର ଘର ମଧ୍ୟ ସେହି କଳଙ୍କରେ—କୁସଙ୍ଗରେ ପଡ଼ି ଯେତେ ବ୍ୟଭିଚାର କରିଛି, ନାରୀ ହୋଇ ଯେତେ ନାରୀଙ୍କର ସର୍ବସ୍ୱ ନେଇଛି, କହିଲେ ଗୋଟାଏ ପୋଥି ହେବ—କିନ୍ତୁ ତା ଫଳରେ ସେହି ମିଶ୍ର—ସେହି ଜଗୁ—ସେହି ସେଠାଲି—ମୋତେ—

ତର୍କ—କଅଣ କହିଲ ମା ! ତୁମେ କଅଣ ତାଙ୍କୁ ଜାଣ ?

ଚଞ୍ଚଳା—ହଁ ବାବା ସେହିମାନେ ଯେ ମୋର ପାପ ପଥର ସାଥୀ—

ମିଶ୍ର—(ଅନୁଚ ପରେ) ମା—ମା—ମୁଁ ସେହି ମିଶ୍ର ମା—

ଜଗୁ—ମା ! ମୋତେ କଅଣ ଚହ୍ନି ପାରୁନାହଁ—ମୁଁ ସେହି ଜଗୁ—

ସେଠା—ଆଉ ମୁଁ ସେହି ସେଠାଲି

( ଜଗୁ ସେଠାଲି ଚଞ୍ଚଳାଙ୍କ ଗୋଡ଼ତଳେ ପଡ଼ିବା )

ସେଠା—ମା, ମୁଁ ତ ତୋତେ ଆଉ ଦେଖି ପାରୁନାହିଁ—ଏ ପାପ ଆଖି ଭଗବାନ କାଢ଼ି ନେଇଛନ୍ତ—ଜଗୁ ଭାଇ, ଥରେ ମୋ ମୁଣ୍ଡଟା କାଟିନେଇ ମୋର ମା' ଗୋଡ଼ତଳେ ଗଡ଼ାଇଦେ—

ଚଞ୍ଚଳା—(ଅଧୀର) ଭଗବାନ, ତୁମ୍ଭେ କଅଣ ନ କରିପାର—

ଆଜି ଶୁଣି ନରନଙ୍କର କୃମିକୀଟ, କି ଭାବରେ ଅନୁପ୍ରାଣିତ ।
କି ମଧୁର ଏହି ମାତୃ ସମ୍ବୋଧନ—ଜଗତର ସମସ୍ତ ପାପ
ସମସ୍ତ ଆବିଳତା—ଏକ ନିମିଷରେ ଏଇ ମା ଡ଼ାକରେ
କୁଆଡେ ଉଭେଇଗଲା—ଆଜି ମୋ ଜୀବନ ଧନ୍ୟ—

[ ପ ଟ ପ ତ ନ ]

ତୃତୀୟ ଦୃଶ୍ୟ

( ପାଟଳିପୁର ଧର୍ମଶାଳା—ସମୟ ଉଷା । ବୀର ଧର୍ମଶାଳାର ଅଗଣାରେ ଚଞ୍ଚଳାକୁଳ ପ୍ରାଣରେ ଦଣ୍ଡାୟମାନ ନିକଟରେ ସଂଘମିତ୍ରା ଆଗରୁ ଯେପରି କିଛି କଥାବାର୍ତ୍ତା ଚାଲିଛି । ସେହି କଥାର ସୂତ୍ରଧରି ବୀର ଅତି ଶୁଷ୍କ ହତାଶ ବାକ୍ୟରେ କହିଲେ ।).

ବୀର —ଆଉ କଅଣ ବାକି ଅଛି ଯେ ସମ୍ରାଟ ପୁତ୍ରୀ, ମୋତେ ଧୈର୍ଯ୍ୟ ଧରିବାକୁ କହୁଛ ।

ସଂଘମିତ୍ରା—କଅଣ ନାହିଁ ଶୁଣେ—ତୁମର ମନୁଷ୍ୟତ୍ୱ—ତୁମର ସତ୍ୟ ପ୍ରତିଜ୍ଞା—ତୁମର ବୀରତ୍ୱ—ସବୁତ ଅଛି ।

ବୀର —ଆଉ କଅଣ ହେବ —ମୁଁ ଏକା—ପରାସ୍ତ—ପରାଜିତ--

ସଂଘ —ଯୁଦ୍ଧରେ ପରାଜିତ ହୋଇ ଏତେ ଅଧୀର ହେଉଛ —ତୁମ୍ଭେ କଅଣ ତୁମର ପ୍ରତିଜ୍ଞା ପାଶୋରି ଦେଲ ?

ବୀର — ତାହା ପାଶୋରି ଦେବ ସମ୍ରାଟ ପୁତ୍ରୀ ? ନିଜର ଜନ୍ମ-ମୃତ୍ୟୁ ପାଶୋରି ପାରେ କିନ୍ତୁ ତପ୍ତ ଅଶ୍ରୁଧାରେ ଲିଖିତ ସେହି ପ୍ରତିଜ୍ଞା ପାଶୋରିବି କିପରି ? ତାହା ପାଶୋରିବାର ନୁହେଁ—

ସଂଘ —ତେବେ ସେ ପ୍ରତିଜ୍ଞା ରକ୍ଷା ଲାଗି କ'ଣ କରୁଛ ଶୁଣେ ?—

ଧର୍ମ ' ଆତ୍ମଗ୍ଲାନି, ନଷ୍ଟେଷ୍ଟତା ଏବଂ ନୈରାଶ୍ୟ—ଏଥିରେ କଅଣ ପ୍ରତିଜ୍ଞା ରହିବ ?

ବୀର —କିନ୍ତୁ ଦେଖିଲତ ଦେଖ ! ମୁଁ ଦୈବ କର୍ତ୍ତୃକ କି ଭାବରେ ବିଡ଼ମ୍ବିତ ? ରାଜବଂଶରେ ଜନ୍ମ, ଆଜନ୍ମ ପିତୃମାତୃ ହୀନ ହୋଇ, ଭିକ୍ଷୁ ପାଳିତ ହେଲି ! ଯୌବନର ପ୍ରଥମ ଉଚ୍ଛ୍ୱାସରେ ଅତୀତର କାହାଣୀ ଶୁଣି ପିତୃଶତ୍ରୁର ପ୍ରତିଶୋଧ ନେବାକୁ ବିଦେଶୀ ରାଜାର ଶରଣ ନେଲି କିନ୍ତୁ ମୋ ଦୁର୍ଦ୍ଦୈବ ମୋତେ ପଦେ ପଦେ ବାଧା ଦେଉଛି—

ସଂଘ —ଦୈବ କେବେ ଦୁର୍ଦ୍ଦୈବ ନୁହେ—ନିଜର ଅପୌରୁଷକୁ ଦୈବ ଉପରେ ଢ଼ାଳ ନା ।

ବୀର—ଦୁର୍ଦ୍ଦୈବ ନୁହେ ? ତେବେ ଦୈବ ସୃଷ୍ଟିରେ ଏପରି ନୃଶଂସତା—ଅତ୍ୟାଚାରର ଉତ୍ପୀଡ଼ନ କାହିଁକି ? ତାଙ୍କର ପ୍ରେମରାଜ୍ୟ ସଂସାର ହଳାହଳରେ ଏପରି ପୂତିଗନ୍ଧ ମୟ ହୁଏ କାହିଁକି ?

ସଂଘ—ବୃଥା ଏ ଅଭିମାନ ତୁମ୍ଭର ବୀର !—ଆଜି ଯଦି ତୁମେ ଜୟ କରି ଫେରିଥାନ୍ତ ତେବେ ଠିକ ଏହାର ବିପରୀତ କଥା କହୁଥାନ୍ତ—ପରାସ୍ତ ହୋଇ ଫେରିଛ, ସେଥିଲାଗି ଏତେ ଦୁଃଖ—ଏତେ ଅଧୀରତା । ଏହାହିଁ କଅଣ ବୀରର ଲକ୍ଷଣ ? ଏହାହିଁ କଅଣ ସିଦ୍ଧିଲାଭର ପନ୍ଥା ?

ବୀର—ତେବେ ତୁମ୍ଭେ କଅଣ କୁହ—ସମ୍ରାଟ ନନ୍ଦନୀ !

ସଂଘ—ମୁଁ କଅଣ କହେ—ମୁଁ କହେ ଏହା ଭୀରୁତା-ଉଦାସୀନତା, ଏ ସବୁ ଛାଡ଼ ପୁଣି ଲକ୍ଷ ପଥରେ ଅଗ୍ରସର ହୁଅ—

ବୀର —ଏହି ଦୁଃଖ, ପରାଜୟ, ଲାଞ୍ଛନା—

ସଂଘ —ତୁମେ କଅଣ ଭାବୁଛ—ସୁଖହିଁ ତୁମର ଈଶ୍ୱରଙ୍କଠାରୁ ଏକମାତ୍ର ପ୍ରାପ୍ୟ ଏବଂ ଦୁଃଖଟା ତାଙ୍କର ତୁମ ଉପରେ ଅତ୍ୟାଚାର, ନା ବୀର ! ଦୁଃଖ ସୁଖ, ଆନନ୍ଦ ନିରାନନ୍ଦ, ଜୟ ପରାଜୟ କେବଳ ଗୋଟିଏ ନିୟମର ଦୁଇଟି ଶାଖା—

ବୀର —ସେଇଥି ଲାଗି କଅଣ ଦୁଃଖର ଶାଖାଟି କେବଳ ମୋ'ର ମୁଣ୍ଡରେ ଭାଙ୍ଗି ପଡ଼ୁଛି ! ଏଥି ପାଇଁ ଦାୟୀ କିଏ ?

ସଂଘ —ଦାୟୀ ତୁମର ନିଜର ଏକାଗ୍ରତାହୀନ ସାଧନା, ଅଜ୍ଞାତ ସ୍ଥାନ, ଅପରିଚିତ ସୈନିକ, ନୂତନ ଉଦ୍ୟମ ଅଥଚ ଦୁଃସାଧ୍ୟ ଲକ୍ଷ । ବୀର ହୃଦୟ ଯାହାର, ମହତ୍ ଉଦ୍ଦେଶ୍ୟ ଯାହାର,ତା ପକ୍ଷରେ ପରାଜୟ ତ ହତାଶର ଲକ୍ଷଣ ନୁହେ ବରଂ ନବୀନ ଆଶାର ଉନ୍ମାଦନା—

ବୀର—କିନ୍ତୁ ଏତେ ମଗଧ ସେନା ମୋ ପାଇଁ ମରିଲେ ମଗଧେଶ୍ୱର କଅଣ ମନେ କରୁଥିବେ, କେଉଁ ସାହାସରେ ତାଙ୍କୁ ମୁହଁ ଦେଖାଇବି ?

ସଂଘ —ବୃଥା ଏ ସଙ୍କୋଚ ତୁମର; ନିୟତ ଯୁଦ୍ଧ ବିଗ୍ରହରେ ଲିପ୍ତ ଥାଇ ରକ୍ତ ପ୍ରବାହ ଉପରେ ସିଂହାସନ ସ୍ଥାପନ କରି ମଗଧେଶ୍ୱର ପରାଜୟ ଶବ୍ଦକୁ କେବଳ ଆଭିଧାନିକ ମନେ କରନ୍ତି । ଇତଃସ୍ତତ କରିବାର କାରଣ ନାହିଁ । ତୁମେ ଜାଣନା ବୀର,ରାଜାଧିରାଜ ଅଶୋକ ଯାହା କର୍ତ୍ତବ୍ୟ ବୋଲି ମନେ କରନ୍ତି ତାହା ସାଧନ ନିମିତ୍ତ ସେ ଜଗତର ସମସ୍ତ ପ୍ରିୟ ପଦାର୍ଥ ଅକାତରେ ବିସର୍ଜନ ଦେଇ ପାରନ୍ତି । କଠୋର କର୍ତ୍ତବ୍ୟ ପାଖରେ ପୁତ୍ରଶୋକାତୁରା ଜନନୀର ତପ୍ତାଶ୍ରୁ ଧାରା ଅବା ଆତତାୟୀର ଉତ୍ଥିତ ଖଡ୍ଗ, କିଛି ତାଙ୍କୁ ବିଚଳିତ କରି ପାରେ ନା ।

ଝୀର—ଦେଖ—ଦେଖ—ତୁମ୍ଭର କଥାରେ ଯେ ଝୀରର ପ୍ରାଣରେ ନବୀନ ଆଶାର ସଞ୍ଚାର ହେଉଛି କିନ୍ତୁ ସଫଳ ହୋଇପାରିବ ତ ?

ନନ୍ଦ—ନ ହୋଇ ପାରିବତ ସେହି ଚେଷ୍ଟାରେ ଜୀବନ ଅବସାନ ହେଉ, ଯାଅ ମଗଧେଶ୍ୱରଙ୍କୁ ସାକ୍ଷାତ କର—ତୁମ୍ଭର ବ୍ରତ ନିଶ୍ଚୟ ଉଦ୍‌ଯାପିତ ହେବ ।

ଝୀର—ତେବେ ଯାଉଛି ରାଜପୁତ୍ରୀ ! ତୁମେ ପିତା ପୁତ୍ରୀ ଦୁହେଁ ଝୀରର ଶେଷ ଭରସା—ପିତାର କାୟିକ ଶକ୍ତି ଏବଂ ପୁତ୍ରୀର ମାନସିକ ବଳ ମୋତେ ଲକ୍ଷ ପଥରେ ନେଇଯାଉ–(ପ୍ରସ୍ଥାନ)

ନନ୍ଦ—[ ସ୍ୱଗତଃ ] ଏହି ଯୁବକ—ଗୁରୁଦେବଙ୍କର ଆଶ୍ରମରେ ଆଜନ୍ମ ପାଳିତ—ଅଥଚ ଏହାର ପ୍ରାଣରେ କାମନାର କି ତୀବ୍ରଜ୍ୱାଳା—ଏ ଅଧର୍ମର ଅଭ୍ୟୁତ୍‌ଥାନ ବିନା ସଂଘର୍ଷଣରେ ବିଲୟ ହେବ ନାହିଁ—ଏହି ବିରାଟ କାମନା ବହ୍ନି, ଖାଣ୍ଡବ ବନ ତୁଲ୍ୟ ଅସୀମ ଆହୂତି ନ ପାଇଲେ ଲିଭିବ ନାହିଁ— କିନ୍ତୁ ଭବିଷ୍ୟତରେ ଏ ଆବିଳତା ଓ ଆସକ୍ତି ଯେତେବେଳେ ମନରୁ ଲୁପ୍ତ ହେବ, ସେତେବେଳେ କଅଣ ରହିବ ? ରହିବ ନିଷ୍କାମ ଇଚ୍ଛାର ନଭସ୍ପର୍ଶୀ ପାବକ ଶିଖା, ଆତ୍ମତ୍ୟାଗର ଅଶ୍ରୁତର୍ପିତ ଉନ୍ମାଦନା, ବିଶ୍ୱପ୍ରେମର ଯୁଗପ୍ଳାବୀ ପୁଲକଧାରା- ସେତେବେଳେ ହିଂସା ଅହିଂସାରେ ବିଲୟ, କ୍ଷମାରେ ବିଦ୍ୱେଷର ବିପର୍ଯ୍ୟୟ—ବିଶ୍ୱ ସାରା ମୈତ୍ରୀ ବିଶ୍ୱସାରା ପ୍ରୀତି । ଧନ୍ୟ ସାଧକ, ଜ୍ଞାତ ପଥରେ ତୁମ୍ଭେ କି କୈବଲ୍ୟ ଆଡ଼କୁ ଯାଉ ନାହଁ । ଏହି ଭାଗ୍ୟହୀନା କଅଣ ତାହାର କିଛି କାର୍ଯ୍ୟରେ ଆସିବ ନାହିଁ ?

( ପଟ ପ ତ ନ )

## ୪ର୍ଥ ଦୃଶ୍ୟ

( ସ୍ଥାନ—କଳିଙ୍ଗ ମନ୍ତ୍ରଣା କକ୍ଷ ସମୟ ମଧ୍ୟ ରାତ୍ରୀ । ସାରା ନଗରୀ ହତାଶ ଓ ବିପଦର ଆଶଙ୍କାରେ ମ୍ରିୟମାଣ—ରାଜା ଶିଳାଦିତ୍ୟ ଅସ୍ଥିରଭାବେ କକ୍ଷ ମଧ୍ୟରେ ଏପାଖ ସେପାଖ ହେଉଛନ୍ତି—ମନ୍ତ୍ରୀ ଏକ ଜାଗାରେ ଠିଆ ହୋଇ ଆଦେଶ ଅପେକ୍ଷାରେ ଅଛନ୍ତି । )

ଶିଳା —ସମ୍ବାଦ ତାହାହେଲେ ଖୁବ ଭୀଷଣ । ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ଚାରିଆଡ଼େ ବିପ୍ଳବ ବିଦ୍ରୋହ ଏବଂ ଗଣ୍ଡଗୋଳ ?

ମନ୍ତ୍ରୀ—( ନୀରବ ରହିଲେ)

ଶିଳା—ଚୁପ୍ ରହିଲ ଯେ—ତୁମର ପରାମର୍ଶ କଅଣ ?

ମନ୍ତ୍ରୀ—ପରାମର୍ଶର ଅବସର ନାହିଁ ମହାରାଜ !

ଶିଳା—ଏହାହିଁ କଅଣ କଳିଙ୍ଗ ମହାମାତ୍ୟ ପକ୍ଷରେ ଉଚିତ କଥା ? ହତାଶର ବାଣୀ ଶୁଣିବାକୁ କଅଣ ତୁମକୁ ଡକାଇଥିଲି ?

ମନ୍ତ୍ରୀ—ସତ୍ୟ କହିବା ଯେ ମୋର କର୍ତ୍ତବ୍ୟ ମହାରାଜ !

ଶିଳା — ଏଇ କର୍ତ୍ତବ୍ୟ ତୁମର—ଦେଶ ଶତ୍ରୁ ସମାକୁଳ, ରାଜ୍ୟଧ୍ୱଂସ ପଥରେ—ଏତିକବେଳେ ତୁମେ ଶୁଣାଉଛ ମର୍ମଭେଦୀ ପରାସ୍ତ କାହାଣୀ—ଧିକ୍ ତୁମକୁ

ମନ୍ତ୍ରୀ—କଅଣ କରିବି ସମ୍ରାଟ—ମୁଁ ଯେ କିଛି କୂଳ କିନାରା ପାଉନାହିଁ

ଶିଳା—ତେବେ ଶୁଣ । ମୋତେ ଏକାକୀ ଏହି ଅକୂଳ ସାଗରରେ ଝାମ୍ପ ଦେବାକୁ ପଡ଼ିବ । ସେନା ସାମନ୍ତ, ମନ୍ତ୍ରୀ ମନ୍ତ୍ରଣା ମୋର କିଛି ଲୋଡ଼ା ନାହିଁ—

ଦୂତର ପ୍ରବେଶ ଓ ନୀରବ ଅଭିବାଦନ )

ଶିଳା—ପୁଣି କି ସମ୍ବାଦ ଦୂତ ?

ଦୂତ—ତାମ୍ରଲିପ୍ତ ଶତ୍ରୁ କବଳିତ ଏବ ୨୦ ସହସ୍ର କଳିଙ୍ଗସେନା ବିନଷ୍ଟ
ଶିଳା—୨୦ ସହସ୍ର ? ତା'ପରେ ଆଉ କଣ ?
ଦୂତ—ସିଂହଭୂମିର ଭୂୟାଁ । ବାହିନୀ ଯୁଦ୍ଧରେ ଅଗ୍ରସର ହୋଇଥିଲେ ମାତ୍ର ବୀରର ମାଗଧସେନା ସମସ୍ତଙ୍କୁ ବିଧ୍ୱସ୍ତ କରିଛନ୍ତି, ବେଳାପ୍ଲାବୀ ସିନ୍ଧୁଗାମୀ ନଦୀ ପରି ବୀର ଆସୁଛି ମୃତ୍ୟୁର ଅଗ୍ରଦୂତ ହୋଇ ।
ଶିଳା—ଆଉ କଣ ? କହିଯାଅ—
ଦୂତ—ଗିରି, ଗ୍ରାମ, ବନ କାନ୍ତାର ସର୍ବତ୍ର ବହ୍ନିଶିଖାର ଦାବାନଳ ସୃଷ୍ଟି କରି ବୀରର ବିଜୟୀ ବାହିନୀ ଆଜି ଉନ୍ମତ୍ତ । ଏକମାତ୍ର ଉପାୟ ହେଉଛି—
ଶିଳା—କଅଣ ? ( ବ୍ୟଗ୍ରଭାବେ )
ଦୂତ—ସନ୍ଧି ପ୍ରାର୍ଥନା—
ଶିଳା—( ରାଗରେ ) କଅଣ କହିଲୁ ଦୂତ । ସେ ଦିନ ଯେଉଁ ଅପଗଣ୍ଡ ଶିଶୁଟାକୁ ତୁଚ୍ଛ ଜ୍ଞାନ କରି ଜୀବନରେ ନ ମାରି ଛାଡି ଦେଇଥିଲି ତାହା ସହିତ ସନ୍ଧି କରିବି । ଶୁଣୁଛ ମନ୍ତ୍ରୀ; କା ପୁରୁଷ ଗୁଡ଼ା ଏ ନ ପୋଷିଛି ।

ମନ୍ତ୍ରୀ—ଦୂତ ସମ୍ବାଦ—ବାହକ ମାତ୍ର ମହାରାଜ ।
ଶିଳା—ଯା ଘରେ ଘରେ ଘୋଷଣା ଦେ, ଯେତେ ଯେଉଁଠି ଅବଶିଷ୍ଟ ସୈନ୍ୟ ଅଛନ୍ତି ସମସ୍ତେ ଅଚିରେ ଆସି ରାଜଧାନୀରେ ସମବେତ ହେଉନ୍ତୁ । କଳିଙ୍ଗର ପ୍ରତ୍ୟେକ ପୁରୁଷ, ଶିଶୁ ଅବା ତରୁଣ ପ୍ରୌଢ ବା ବୃଦ୍ଧ କେହି ବାକି ନ ରହୁ, ଯା ।

ମନ୍ତ୍ରୀ—ମହିମା—ସେ ଦିଗରୁ ମୁଁ ଶ୍ରୀଗୁରୁଙ୍କର ଆଦେଶ ନ ପାଇ ମଧ୍ୟ ଚେଷ୍ଟା କରିଛି । କୃତକାର୍ଯ୍ୟ ହୋଇ ନାହିଁ ।
ଶିଳା—ମୋତେ ଏ କଥା ଜଣାଇ ନାହିଁ ?

ମନ୍ତ୍ରୀ—ଆଉ ଜଣାନ୍ତୁ କାହିଁକି ? ରାଜାର ଆଦେଶଠାରୁ ରାଣୀଙ୍କ ଆଦେଶ ବଳ ଗଲାରୁ ଏବଂ ପ୍ରଜାମାନେ ଅତ୍ୟାଚାରିତ ହୋଇ ପ୍ରତିକାର ନ ପାଇବାରୁ ସେମାନଙ୍କର ମନବ୍ୟଥା, ନୀରବ ଭାଷାରେ ଷଡ଼ଯନ୍ତ୍ର ରାଜଦ୍ରୋହ ପ୍ରଚାର କରି ଦେଶକୁ ରୁଦ୍ଧଶ୍ୱାସର ଭଗ୍ନଧ୍ୱନିରେ ବିକମ୍ପିତ କରୁଥିଲା । ଏଥିପାଇଁ ପ୍ରଜାଏ ଆଜ ପୃଷ୍ଠଭଙ୍ଗ ଏବଂ ଉପଯୁକ୍ତ ସେନାନୀ ଅଭାବରୁ ସୈନ୍ୟମାନେ ଛତ୍ରଭଙ୍ଗ ।

ଶୀଳା—ଏ ଯେ ଦୁର୍ବିସହ କଳଙ୍କ, ରାଜା ଉପରେ କ୍ଷୋଭ କରି କଳଙ୍ଗବାସୀ ଯଦି ଭୀରୁ ହୁଅନ୍ତି, ରାଜାର ଅବିଚାର ପାଇଁ ଜନ୍ମଭୂମିକୁ ଶତ୍ରୁ ହାତରେ ଟେକି ଦିଅନ୍ତି, ଦେଶର ଏହି ଦୁର୍ଦ୍ଦିନରେ ଯଦି ଦେଶର ସନ୍ତାନ ହୋଇ ପଶ୍ଚାତ୍ପଦ ହୁଅନ୍ତି ତେବେ ଭବିଷ୍ୟତ ଇତିହାସ କଣ ଗାଇବ ।

ମନ୍ତ୍ରୀ—କାହାକୁ କହିବେ ମଣିମା କିଏ ଶୁଣିବ ?

ଶୀଳା—ବେଶ ତାଇ ହେଉ । କେହି ନ ଆସୁ ମୁଁ ଏକା ଯିବି, କେହି ଯୁଦ୍ଧ ନକରୁ ମୁଁ ଏକା ମୃତ୍ୟୁର ସମ୍ମୁଖୀନ ହେବି ।

ମନ୍ତ୍ରୀ—ମହାରାଜ, ଅଶୀତିପର ବୃଦ୍ଧ ମୁଁ—ଆଜୀବନ କଳିଙ୍ଗ ଅନ୍ନରେ ପ୍ରତିପାଳିତ, ଦେଶ ଶତ୍ରୁର ଗତିରୋଧ କରିବାର ସାଧ ଯଦି ଆଜ ଏ ସ୍ଥବିରର ନ ଥାଏ ତଥାପି ଦେଶର ସ୍ୱାଧୀନତା ନିମିତ୍ତ ପ୍ରାଣକୁ ଅକାତରେ ବଳି ଦେବାର ସଂକୋଚ ମଧ୍ୟ ମୋର ନାହିଁ । ଯାଉଛି ଦେଖେ—[ପ୍ରସ୍ଥାନ]

( ମନ୍ତ୍ରୀର ପ୍ରସ୍ଥାନ ପରେ ଶିଳାଦିତ୍ୟ କିଛିକ୍ଷଣ କକ୍ଷ ଭିତରେ ଏପାଖ ସେପାଖ ବୁଲି ଚିନ୍ତା କଲେ ତତ୍ପରେ କହିଲେ )

ଶୀଳା—ଏଇହେଲା ପରିଣାମ—ଆଜି ବୀର ପ୍ରସୂ କଳଙ୍ଗ ଶତ୍ରୁ କବଳିତ ହେଲାବେଳେ ତାହାର ସ୍ୱୈଣ ରାଜାର ଅମିତ୍ତଯୋଗୁଁ କେହି ଜଣେ ହେଲେ ସନ୍ତାନ ବାହାରୁ ନାହିଁ ମାତାକୁ

ରକ୍ଷା କରିବାକୁ, ଆଜ ମୋର କେହି ସଖା ସୋଦର ନାହିଁ,
ଅଛି ମୁଁ ଏକା—

[ହଠାତ୍ ରାଣୀଙ୍କର ପ୍ରବେଶ]

ରାଣୀ—ଏକା ନୁହେଁ ମହାରାଜ । ମୁଁ ଯେ ସାଙ୍ଗେ ସାଙ୍ଗେ । ଦୁଃଖ କଅଣ—ଚାଲ, ସ୍ବାମୀ ସ୍ତ୍ରୀ ଦୁହେଁ ଶତ୍ରୁ ସହିତ ଯୁଦ୍ଧ କରିବା ।

ଶିଳା—(ପ୍ରାଣହୀନ ହାସ୍ୟସହ) ଶତ୍ରୁ ସହିତ ନୁହେଁ; ମୃତ୍ୟୁ ସହିତ, ବେଶ୍ ଚାଲ—କିନ୍ତୁ ମନେ ରଖ, ରଣକ୍ଷେତ୍ର ରାଜପ୍ରାସାଦର ଶୟନ କକ୍ଷ ନୁହେଁ ।

ରାଣୀ—ଏବଂ ଆନ୍ଧ୍ର ରାଜକନ୍ୟା ମୃତ୍ୟୁର ଆବକା ନୁହେଁ ।

ଶିଳା—ଦୁର୍ଦ୍ଦିନରେ ସୁଦ୍ଧା ମୋତେ ହସ ମାଡ଼ୁଛି । ହଉ ଚାଲ—ରାଜା ରାଣୀ ପାଖ ପାଖି ଠିଆହୋଇ ଶତ୍ରୁର ଖରମୁନକୁ ବକ୍ଷ ମୁକ୍ତ କରିଦେବା—ଜୀବନ ରଙ୍ଗ ମଞ୍ଚରେ କ ଭଳି ଯବନିକା ପଡ଼ିବ ଦେଖିବା—

ରାଣୀ—ଉତ୍କଟ ଅଭିନବ ଏବଂ ଅଶ୍ରୁତପୂର୍ବ ବିୟୋଗାନ୍ତକ ଦୃଶ୍ୟରେ ସେ ମହାକାବ୍ୟର ସମାପ୍ତି ହେବ ।

(ଯ ବ ନି କା ପ ତ ନ)

—୫ମ ଦୃଶ୍ୟ—

(ତୋଷାଳି ରାଜପଥ । ପଳାତକ ନଗରବାସୀଗଣ । ଅନ୍ତରାଳରୁ ଶୋଷାଏ ଭୀତପ୍ରଦ କୋଳାହଳ ଶୁଣା ଯାଉଥାଏ । ଊର୍ଦ୍ଧ୍ୱଶ୍ୱାସ ହୋଇ ଦୁଇଜଣ ନଗର ବାସୀ ଓ ଜଣେ ସ୍ତ୍ରୀ ଲୋକର ପ୍ରବେଶ)

ହରିଆ— ଆଲୋ ଫେଙ୍କୁ ମା, ଆଲୋ ଦଉଡ଼ ଆଲୋ, ଦଉଡ଼ ଆ—

[ ପଛକୁ ଭୟେ ୨ ଅନାଇ ହାତଠାର ଚିତ୍କାର କରିବା ]

ପେଗ୍ଗୁ ମା—ହଇ ମ—ମୋ ପନିକ, କୁଣ୍ଡ, ବଣାକାଠି ସବୁ ଛୁଡି ଆସିଲି—ଟିକିଏ ଦଉଡ଼ି ଯା'ମ—ହାଣ୍ଡିଶାଳ ପିଣ୍ଡାରେ ଅଛି

ହରି—ଆଉ ହଣ୍ଡିଶାଳ—ସେଠିତ ଧୂଆଁ ଉଠିଲାଣି । [ମୁଣ୍ଡ ଟେକି ଅନାଇବା] ହେଇ ଦେଖ—ମୁଁ କ'ଣ ମରିବାକୁ ଯିବି—

ପେଗ୍ଗୁ ମା—ଅଣ୍ଟିଗ୍ [illegible] ହୋଇ ମାଇପିଙ୍କ ପରି ଏଡ଼େ ଡ଼ର କାହିଁ ମ—ଗ୍ଟେରିଗଲେ ଫେର କେଉଁଠୁ ପାଇବା—ନଅ ପଇସା ପାଣିରେ ଗଲା ସିନା—

ହରି—ଆଲୋ—ଗଲେ ଯାଉ, ଜୀବନରେ କେତେ ନଅ ପଇସା । ଗ୍ଲଲ ପଳାଇ ଗ୍ଲଲ—ଏଇ ଦେଖ ସାନ୍ତରା ସାହି ତଳ ଉଠିଲାଣି—ବାହରେ—ସଇଲାରେ

[ଅନ୍ୟ ନଗରବାସୀ ଧଇଁ ସଇଁ ହୋଇ ପ୍ରବେଶ]

ହରିଆ—କି ଦୁର୍ଯୋଗରେ ବାପା—ମୋର ସବୁ ଧାନ ଅମାର ଜଳି-ଗଲା—କ'ଣ କରିବି—ଲଢ଼େଇ କଲେ ରାଜା ସଙ୍ଗେ ରାଜା, ମାଡ ପଡ଼ିଲା ଆମ ଗରିବଙ୍କ ଉପରେ । କି କାଳ ପଡ଼ିଲାରେ ।

ହରି—ପଧାନ ପୁଅ—ପାଇକ ଗୁଡାକ ଏ ଗାଆଁରେ ବି ନିଆଁ ଲଗାଇ ଦେଲେଣି—ହେଇ ଅନାଇଲଣି ଆର ଗାଁରେ ମଧ୍ୟ ନିଆଁ ଜଳୁଛି କିଛି ବାକୀ ରଖୁନାହାନ୍ତି ।

( ଦୁରରୁ କାନ୍ଦ ବୋବାଳି ଶବ୍ଦ )

ହରିଆ—ହେଇ ଶୁଣ—ରାମ ସାହୁ ପାଟି ଶବଦ—ପିଲା ବୁଢ଼ା କିଛି ବାକି ରଖୁନାହାନ୍ତି-ବିଚରା ଗଲା ଏଥର । ଗ୍ଲଲ ପଳାଇବା ।

ପେଗ୍ଗୁ ମା—ରାମ ସାହୁ ଗଲା ? ମୋର ତିନିଅଣା କାଳ କରି ଖାଇଛି କିଏ ଦେବ—

ହଣ୍ଟୁଆ—ତା'ର ତିନି ଲକ୍ଷ ଟଙ୍କାର ଜୀବନ ଗଲା ତୋ ତିନି ଅଣାକୁ କିଏ ପଗ୍ଟରେ ଲୋ ।

ହରି—ପଧାନ ଭାଇ ! ପରଜା,ଙ୍କର ଏ ନଶ୍ୱାସ କଅଣ ତା ଉପରେ ପଡ଼ବ ନାହିଁ—ଏଥିରେ କଅଣ ଧର୍ମ ସହିବ ?

ପଧାନ—ଧର୍ମ କଅଣ ଆଉ ଏ ଯୁଗରେ ଅଛୁ କରେ ହରଆ--ଆମେ ସବୁ ହୀନ କପାଳିଆ, ଯୁଆଡେ ଯାଇ,କର୍ମ ପେନ ବୁଲୁଆଇଁ; ଚାଲ—ଚାଲ—[ଦଉଡ଼ ପଳାଇବା ଉଦ୍ୟତ]

ପେରୁମା—ଏ—ମୋ ଖୋସଣୀ ଫିଟିଗଲା ଟିକଏ ଛିଡା ହୁଏ ମ—

ହରି—ଫିଟିଲେ ଫିଟିଲା—ଆଗେ ଜୀବନ ରହୁ—ପନ୍ତେ ଖୋସଣୀ ମାରବୁ ଏ ମାଇପି ଜାତ ସାଙ୍ଗରେ ଥିଲେ ଡନପୁରରେ ଠାବ ନାହିଁ ।

ପଧାନ—ହଉ, ହଉବେ, ଜଲଦ ମାରଦେ—ଏହିକ୍ଷଣିକା ଆସି ପହଞ୍ଚିବେ—ଆଉ ରକ୍ଷାନାହିଁ—ସେ ପାହାଡ ଖୋଲରେ ନ ଲୁଚଲେ ଆଉ ରକ୍ଷାନାହିଁ—ମୁଁ ତ ମୋ ଧନରତ୍ନ ଯେତେ ସବୁ କୁଅରେ ପକାଇ ପଳାଇ ଆସିଛି—ଆଲେ ଆ ଜଲଦି--ନ ହେଲେ ମର ଏଇଠି—

ପେରୁ ମା—ନାଇଁ ନାଇଁ ଚାଲ—ମୋ ମାଲେ—( ସମସ୍ତଙ୍କର ପଳାୟନ )

( ପ ଟ୍ଟ ପ ତ ନ )

ଷଷ୍ଠ ଦୃଶ୍ୟ

( ଶୀଳାଦତ୍ୟଙ୍କ ଶିବର—ସମୟ -ସନ୍ଧ୍ୟା, ଦୂରରୁ ବଜୟ କୋଳାହଳ ଶୁଭୁଛି—ଶୀଳାଦତ୍ୟ ହତାଶରେ କ୍ଷିପ୍ତ । ଜଣେ ଦୂତ ସମ୍ବାଦ ନେଇ ଅସି- ଥିଲା —ସେ ଠିଆ ହୋଇଛି ।

ଦୂତ—ପଳାଇ ଯାଆନ୍ତୁ ମହାରାଜ ! ବର୍ତ୍ତମାନ ସୁଦ୍ଧା ସମୟ ଅଛି ।

ଶିଳା—କୁଆଡ଼େ ପଳାଇପିବ—ଶତ୍ରୁଆଡ଼େ ସେ ସୈନ୍ୟ ଘେରି ରହି ଅଛନ୍ତି—ବାଟ କାହିଁ—ତୁ ବରଂ ପଳାଇଯା—ପ୍ରାଣ ରକ୍ଷାହେବ ।

ଦୂତ—ମୁଁ ମୋ ପାଇଁ ଚିନ୍ତିତ ନୁହେ ମହାରାଜ । କିନ୍ତୁ ଆଉ ଉପାୟ ନାହିଁ । ସବୁ ସୈନ୍ୟ ଆମ୍ଭର ଛତ୍ରଭଙ୍ଗ ହୋଇ ପଳାଇ ଗଲେଣି—

ଶିଳା—ମୁଁ ତେବେ ଆଜ ଏ ପୋଡ଼ାପ୍ରାଣ ଘେନି କେଉଁଆଡ଼େ ଯିବି ?

ଦୂତ—ଥରେ ହେଲେ ଚେଷ୍ଟାକରନ୍ତୁ ମହାରାଜ—ଯଦି ଆତ୍ମରକ୍ଷା ହୁଏ—ପରେ ପୁଣି ସୈନ୍ୟ ସଂଗ୍ରହ କରିପାରିବା, ଯୁଦ୍ଧରେ ଜୟ ପରାଜୟ ଘଟିଥାଏ ।

ଶିଳା—ପୁଣି ସୈନ୍ୟ ସଂଗ୍ରହ ? ( ଅବିଶ୍ୱାସ ଭରେ)

ଦୁତ—ହଁ ମହାରାଜ—ନେପଥ୍ୟେ ଜୟ (ମଗଧେଶ୍ୱରଙ୍କର ଜୟ)ଏଇ ମହାରାଜ । ଶିବିର ଆକ୍ରମଣ ହେଲଣି—ଆଉ ବେଳ ନାହିଁ ପଳାଇଯାନ୍ତୁ ମହାରାଜ —ପଳାଇଯାନ୍ତୁ—

(ହଠାତ୍ ବୀର ସସୈନ୍ୟେ ପ୍ରବେଶ )

ବୀର—ଆଉ ପଳାଇବାକୁ ହେବନାହିଁ —ବନ୍ଦୀକର ସୈନିକ—

(ସୈନ୍ୟ ଶିଳାଦିତ୍ୟ ଓ ସୈନିକକୁ ବନ୍ଦୀକଲେ )

ଶିଳା—କିଏ—ପରାକ୍ରମଶାଳୀ—ଅଜ୍ଞାତଶ୍ମଶ୍ରୁ ଯୁବକ—

ବୀର—ହଁ—ଚିହ୍ନି ପାରୁନାହଁ—ସେ ଯୁଦ୍ଧ ଆଉ ଏ ଯୁଦ୍ଧର ବେଶୀ ଦିନର କଥାନୁହେଁ [କିଛି ପରେ ] ଓହୋ —କଳଙ୍ଗ କେଶରୀଙ୍କର କେଶର ଆଜି ଛିଡ଼ି ଯାଇଁଛି ପରା ?

ଶିଳା—ଚିହ୍ନିଛି । ମୁଁ ଯେଉଁ ଶିଶୁକୁ ସେଦିନ ଘୃଣାରେ ନମାରି ଛାଡ଼ି ଦେଇଥିଲି ସେହି —ତୁ—ନା

ବୀର—ହଁ ସେହି ତୋର ଯମ । ମନେ ପଡ଼େ ପାଷାଣ ଯେତେ-ବେଳେ ମୋର ପୂଜ୍ୟପାଦ ମାତାମହ ତୋତେ ଦୟା-

ପରବଶ ହୋଇ ସିଂହାସନ ଦାନ କରିଥିଲେ ? ମନେପଡ଼େ କୃତଘ୍ନ ! ତୁ କ ଭାବରେ ସେ ଦାନ ପ୍ରତିଦାନ ଦେଇଛୁ ? ତୋର ଅଙ୍ଗ ପ୍ରତ୍ୟଙ୍ଗ ଖଣ୍ଡ ବିଖଣ୍ଡ କରି ଶ୍ୱାନ ଶୃଗାଳକୁ ଖୁଆଇଲେ ମଧ୍ୟ ତୋର ସମୁଚିତ ହେବନାହିଁ—ତୋ'ର ମୃତ୍ୟୁ—(ଅଶୋକ—ସସୈନ୍ୟେ ପ୍ରବେଶ)

ଅଶୋକ—ମୃତ୍ୟୁ ଯେ ତା' ପ୍ରତି ଆଶିର୍ବାଦ ବୀର—ତାକୁ ମୃତ୍ୟୁ-ଠାରୁ ବଳି ଭୀଷଣ ଦଣ୍ଡ ଦେବାକୁ ପଡ଼ିବ—ପ୍ରତି ନିୟତ ଜୀବନ୍ତ ମୃତ୍ୟୁର ବିଷ ଦାହରେ ଜଳାଇ ପୋଡ଼ାଇ ମାରିବାକୁ ହେବ—

ବୀର—ଠିକ୍ କହିଛନ୍ତି ମହାରାଜ । ମୃତ୍ୟୁ ତାକୁ ଏତେ ଶୀଘ୍ର ଦେବା ନୁହେଁ—ମୃତ୍ୟୁ ଆଶଙ୍କାରେ ସେ ମର୍ମେ ମର୍ମେ ଶିହରୁ ଥାଉ ।

ଶିଳା—ଉଦ୍ଧତ ରାଜା, ବିଜୟୀ ଉଦ୍ଧତ ରାଜଭୃତ୍ୟ । ଶିଳାଦିତ୍ୟ ବନ୍ଧ ହେଲେହେଁ ଭୀରୁ ନୁହେଁ—ତାର ଯଥାସର୍ବସ୍ୱ ଗଲେ ମଧ୍ୟ ତା'ର ଧମନୀରେ କଳିଙ୍ଗର ବୀରରକ୍ତ ପ୍ରବାହିତ—ନିୟତିର ଚକ୍ର ଘୂର୍ଣ୍ଣନରେ ଆଜ ତା'ର ଏଦୂରବସ୍ଥା—ନଚେତ୍ ପଦା ଘାତରେ (ତଳେ ପଦାଘାତ) ଏହାର ଉପଯୁକ୍ତ ପ୍ରତି-ଫଳ ଦିଅନ୍ତି—ଯଦି ଦଣ୍ଡିକ—ପାଇଁ ମୁକ୍ତି—ପାଆନ୍ତି (ଟାଣି ଓଟାରି ହେବା) ଓଃ ବାସ୍ତବରେ ବନ୍ଧନରେ ପଡ଼ି କେଶରୀ ଆଜ ଅଚଳ—ଭାଗ୍ୟ ବିମୁଖରୁ ଶୃଙ୍ଖଳିତ-ନଚେତ୍ ଶ୍ୱାନ, ଶୃଗାଳ, କେଶରୀ ସମ୍ମୁଖରେ ପଳାୟନର ପଥ ପାଆନ୍ତେ ନାହିଁ—

ଅଶୋକ—(ହସି ହସି) ଲମ୍ଫ ଝମ୍ପ ଯେତେ କରିବାର କରିନିଅ—ଆଉ ବେଳ ପାଇବ ନାହିଁ । ରକ୍ଷୀ—ମୋର ଅନ୍ୟାଦେଶ ପର୍ଯ୍ୟନ୍ତ ସତର୍କରେ ବନ୍ଧ କରି ରଖ—

ଶିଳା—ହଁ ନେଇଚାଲ— ଶ୍ୱାନ ଶୃଗାଳର ଆସ୍ଫାଳନ ଅସହ୍ୟ ।

( ସୈନ୍ୟ ବନ୍ଧକୁ ନେଇ କିଛିଦୂର ଅଗ୍ରସର ହେଲେ )

ଅଶୋକ—ଆଉ ତାର ରାଣୀ—ତାକୁ ଛାଡ଼ି ଦିଆଯାଉ ବୀର ।

ବୀର—ନା ମହାରାଜ ! ମୁଁ ଭୁଲି ଯାଇଥିଲି । ସେହି ତ ସବୁ ଅତ୍ୟାଚାରର ମୂଳ—ଏ ମୂଢ଼ତ ତା' ହସ୍ତର କ୍ରୀଡ଼ା ପୁତ୍ତଳି; ତାହାର କୁଶିକ୍ଷାରେ ମୋର ମାତାମହ ହସ୍ତହୀନ ହୋଇଥିଲେ ।

ଅଶୋକ—କିନ୍ତୁ—ବୀର ! ସେ ଯେ ରମଣୀ ।

ବୀର—ରମଣୀ ବୋଲିତ ଏତେ କଥା—ନଚେତ୍ ମୁଁ ତାକୁ ବନ୍ୟ ଜନ୍ତୁର ଭକ୍ଷ କରାଇଥିଲେ ମଧ୍ୟ ତୃପ୍ତ ପାଆନ୍ତି ନାହିଁ—

ଶିଳା—ରାଜା ! ପରାଜିତ ହୋଇଛି ମୁଁ—ଫଳାଫଳ କାର୍ଯ୍ୟାକାର୍ଯ୍ୟ ଦାୟିତ୍ୱ ମୋର—ରାଣୀ ଅବଳା—ତାଙ୍କ ପ୍ରତି ଅବିଚାର କର ନା, ଅନ୍ତତଃ କ୍ଷତ୍ରିୟ ଯୁଦ୍ଧର ନିୟମ ପାଳନ କର—

ଅଶୋକ—ହଁ—ବୀର ! ରାଣୀଠାରେ ଆମର କି ଆବଶ୍ୟକ—ତା' ପାଇଁ ଯୁଦ୍ଧନୀତି ଲଙ୍ଘନ କରିବା କାହିଁକି ?

ବୀର—ଲଙ୍ଘନ କରିବା କାହିଁକି ? ଏତେବେଳେ ଏ ବର୍ବରର ଯୁଦ୍ଧନିୟମ ବାହାରୁଛି—କିନ୍ତୁ ଯେତେବେଳେ ସେହି ପାପିଷ୍ଠାର ପ୍ରରୋଚନାରେ ପଡ଼ି ଗତ ଯୁଦ୍ଧରେ ୫ ସହସ୍ର ବନ୍ଦୀ ହୋଇଥିଲା ସୈନ୍ୟକୁ ତପ୍ତ ତୈଳରେ ନିକ୍ଷେପ କରି—

ଅଶୋକ—ତପ୍ତ ତୈଳରେ ନିକ୍ଷେପ କରି-ଏ ଅସହ୍ୟ,ରକ୍ଷୀ ନେଇଯାଅ କଳିଙ୍ଗର ଉଚ୍ଛେଦ ସାଧନ ମୋର ଚରମବ୍ରତ—ଯାଅ,ଯାହାକୁ ଯେଉଁଠି ପାଅ କିଛି ବିଚାର କର ନା--କେବଳ ହତ୍ୟାକର ଗ୍ରାମ ନଗର ଜନଶୂନ୍ୟ କର—ଦୁଗ୍ଧପୋଷ୍ୟ ଶିଶୁ କି ଅଶୀତିପର ବୃଦ୍ଧ; ପୁରୁଷ କିମ୍ବା ନାରୀ ଯେ ହେଉ, ଖାଲି ହତ୍ୟା—ହତ୍ୟା—ହତ୍ୟା—ହତ୍ୟାକାଣ୍ଡ—

ଧୀର— ପ୍ରଜାଙ୍କୁ ହତ୍ୟା କରିବାକୁ ଆଦେଶ ଦେଉଛନ୍ତି ମହାରାଜ ! ସେମାନେ ତ ନିର୍ଦ୍ଦୋଷ—

ଅଶୋକ—ନିର୍ଦ୍ଦୋଷ ? ମନେକର ଧୀର, ତୁମ୍ଭର ପିତୃପୁରୁଷଙ୍କର ବଂଶ ଇତିହାସ—ଏହି ଦେଶର କୃତଘ୍ନ ପ୍ରଜା—ଯାହାଙ୍କ ଲାଗି ତୁମ୍ଭର ମାତାମହ ନିଜ ହୃଦୟର ଶେଷରକ୍ତ ବିନ୍ଦୁଟି ପର୍ଯ୍ୟନ୍ତ ଢାଳିଦେଲେ ସେମାନେ କଲେ କଅଣ ? କେହି କ'ଣ ସେତେବେଳେ ସହାନୁଭୂତି ଦେଖାଇଁଥିଲେ ?

ଧୀର—(ଓଷ୍ଠ କାମୁଡ଼ି) ହଁ ଠିକ୍ ମାତାମହଙ୍କର ଅନ୍ତିମ ଆଦେଶ ତାହାହିଁ ହେଉ— କଳିଙ୍ଗ ଦେଖୁ କୃତଘ୍ନତାର ପରିଣାମ କିପରି ଭୟଙ୍କ ବିଧ୍ୱ—ଜଗତ ଦେଖୁ ବୀର ପ୍ରତି ଦୁର୍ବ୍ୟବହାରରେ କେତେ ଦୂର ବିଷ ଜ୍ୱାଳାର ଉଦ୍ରେକ ହୁଏ—

ଅଶୋକ—ଯାଅ ସୈନିକ । ତୁମ୍ଭେ ଶାଣିତ କୃପାଣକୁ ପ୍ରତିଶୋଧ ମନ୍ତ୍ରରେ ଭକ୍ତ କର କଳିଙ୍ଗର ଘରେ ଘରେ ଖାଲି ମହାମାରୀର ସୃଷ୍ଟିକର - ସେ' କ୍ଷେତ୍ରରେ ଅଗ୍ନି ଜାଳି ଭସ୍ମ କରିଦିଅ— କୂପ ପୁଷ୍କରିଣୀରେ ବିଷଭରି ହଳାହଳର ସୃଷ୍ଟି କର— ଯେତେଣେ ଯାଅ, କେବଳ ମୃତ୍ୟୁର ମର୍ମଭେଦୀ ହାହାକାରରେ ଗଗନ ପବନ ବିଷାକ୍ତ କରିଦିଅ— ବିଜୟ ଦମ୍ଭରେ ବକ୍ଷସ୍ଫୀତ କରି ସମଗ୍ର ଦେଶସାରା ଭୀଷଣ ଆତଙ୍କର ସୃଷ୍ଟିକର— ଏବଂ ତାହାର ଉପରେ ମଗଧର ରାଜସିଂହାସନ ଦୃଢ଼ ହୋଇଯାଉ ।

ସୈନିକଗଣ— ଜୟ ମହାରାଜ ଅଶୋକଙ୍କର ଜୟ ।

[ ଯ ବ ନି କା ପ ତ ନ ]

# ଚତୁର୍ଥ ଅଙ୍କ

## ୧ମ ଦୃଶ୍ୟ

ତୋଷାଳି ଦରବାର କକ୍ଷ; ସମୟ ରାତ୍ରୀ ।

(କଳିଙ୍ଗ ବିଜୟ ପରେ ଅଶୋକ ପ୍ରଥମ କରି ତୋଷାଳି ରାଜପ୍ରାସାଦରେ ଆପଣାର ଦରବାର କରି ଅଛନ୍ତି । କଳିଙ୍ଗ ଓ ମାଗଧ ବହୁ ସମ୍ଭ୍ରାନ୍ତ ବ୍ୟକ୍ତି ବିଦ୍ୟମାନ। ସେନା ସେନାଧକ୍ଷଙ୍କୁ ଉପଯୁକ୍ତ ପୁରସ୍କାର ଦିଆଯିବ । ବୀର ଏତେବେଳ ଯାଏ ଅନୁପସ୍ଥିତ । ଦରବାର କାର୍ଯ୍ୟ ଆରମ୍ଭ ପୂର୍ବରୁ ନର୍ତ୍ତକୀମାନେ ନୃତ୍ୟ ଗୀତ ଆରମ୍ଭ କଲେ)

ନର୍ତ୍ତକୀଗଣ—               ଗୀତ

ଗୃହାଁ ସଖି, କିବା ଶିଖି ମହୀରେ ରାଜେ,
ଗଗନେ ବାଜେ ଆଜି ମହୀରେ ରାଜେ—
ମଳୟ ପରଶି ମନ୍ଦେ—ଅନିଳ ଶୀତଳ ଗନ୍ଧେ
ଗାଏ ଜୟ ସୁନ୍ଦ ସୁନ୍ଦ ସୁରେ ॥
ରଜତ କିରଣେ ଶଶି,
ସଜିତ କରୁଛି ନିଶି
କୁଜନେ କୋକିଳ ତାନ ଧରେ ।
ସେହି ସୁରେ ବାନ୍ଧି ତାନ—ଗାଅ ବନ୍ଧୁ ଜୟଗାନ
ଭାରତର ଦୁଃଖନିଶା ଭାଜେ । ୧ ।

[ ନର୍ତ୍ତକୀମାନଙ୍କର ପ୍ରସ୍ଥାନ ]

ଅଶୋକ—ସାମନ୍ତଗଣ !—ଆଜି ଏହି ଆନନ୍ଦ ଦିବସରେ ଆନନ୍ଦ-କର—ମଗଧର ବିଜୟ ଦୁନ୍ଦୁଭି ତୋଷାଳିର ଗୃହେ ଗୃହେ ନିନାଦିତ ହେଉ । ଏତେ ଦିନ ପରେ—ଏତେ ସେନା-କ୍ଷୟରେ କଳିଙ୍ଗର ଜୟ ହୋଇଛି—କିନ୍ତୁ ଯେଉଁମାନେ ପ୍ରାଣଦେଇ ଦେଶର ଏ ଗୌରବ କିଣି ଆଣିଲେ ତାଙ୍କର ତ ଅକ୍ଷୟ ସ୍ୱର୍ଗ, ସୈନିକର ଆଦର୍ଶ ସେମାନେ—ମୃତ୍ୟୁରେ ଅମର ହୋଇ ରହିବେ ସେମାନେ—ତାଙ୍କ ପାଇଁ ଦୁଃଖ କରିବା ମୂର୍ଖର କାର୍ଯ୍ୟ—ମାତ୍ର ଯେଉଁମାନେ ସେ ସୁଯୋଗରୁ ବଞ୍ଚିତ ସେହି ଯୁଦ୍ଧ ପ୍ରତ୍ୟାଗତ ସୈନିକମାନଙ୍କର ଆନନ୍ଦ ଉତ୍ସବ ଆଜି ରାଜ ବ୍ୟୟରୁ ନିର୍ବାହିତ ହେଉ—

୧ମ-ସାମନ୍ତ—ଯଥା ଆଜ୍ଞା—ମହାରାଜ !—

ଅଶୋକ—ଅବଶ୍ୟ ବୀର ନିକଟରେ ଆମ୍ଭେମାନେ କୃତଜ୍ଞ—ନବୀନ ଏବଂ ତରୁଣ ହେଲେହେଁ ସେ ଯେଉଁ ତେଜସ୍ୱିତା ଏବଂ ଦକ୍ଷତାର ପରିଚୟ ଦେଇଛି—ସେହି ଏକା ତାହାର ତୁଳନା

ଯେଉଁ ଅତିବୀର୍ଯ୍ୟ ରଣ ଉନ୍ମାଦନାରେ ସୈନିକର ଆହତ ଶରୀରରେ ଶକ୍ତି ସଞ୍ଚାର କରିଛି—ତାହା ପ୍ରତ୍ୟେକ ମଗଧ ସେନାମାନର ଅନୁକରଣୀୟ । ଅଦ୍ଭୁତ ଯୁବକ—ସାକ୍ଷାତ ଯେପରି ଗୋଟାଏ ମୂର୍ତ୍ତିମାନ୍ ପ୍ରଳୟ—ମୁଁ ସାରା ଆର୍ଯ୍ୟାବର୍ତ୍ତ ଜୟ କରିଛି—ପଞ୍ଚନଦଠାରୁ ଗୌଡ଼ ପର୍ଯ୍ୟନ୍ତ ବହୁତ ଯୁଦ୍ଧ କରିଛି—ବହୁତ ବୀର ଦେଖିଛି କିନ୍ତୁ ମୃତ୍ୟୁ ତୁଚ୍ଛକାରୀ ଏ ଅନନ୍ୟ ସାଧାରଣ ବୀର ପ୍ରତିଭାର ପରିଚୟ ଏଇ ପ୍ରଥମ ଦେଖିଲି—ଶୁଣ ଦୌବାରିକ—ଯାହାଙ୍କ ନିମିତ୍ତ ବିଶେଷ-କରି ଆଜିକାର ଏହି ବିଜୟ ଉତ୍ସବର ଅନୁଷ୍ଠାନ; ସେହି ବୀର ଯୁବକ କାହାନ୍ତି ?—ଯାଅ—ତାଙ୍କୁ ସସମ୍ମାନେ ଘେନିଆସ ।

( ଧୀରର ପ୍ରବେଶ ଓ ଅଭିବାଦନ )

ଧୀର—ଆଉ ଡ଼ାକିବାକୁ ହେବନାହିଁ ମହାରାଜ ମୁଁ ନିଜେ ଆସିଛି ।

ଅଶୋକ—ଆସ ବୀର ! ଏତେବେଳ ଯାଏ କୁଆଡ଼େ ଥିଲ ? ଏ ବିଜୟ ଉତ୍ସବ ତୁମ୍ଭରି—ଏଥିରେ ତୁମ୍ଭର ସର୍ବ ପ୍ରଥମେ ଯୋଗଦେବା ଉଚିତ—ଦୌବାରିକ—ନର୍ତ୍ତକୀମାନଙ୍କୁ ଆଉ ଗୋଟାଏ ବନ୍ଦନା ଗୀତ ଗାଇବାକୁ କୁହ—

ଧୀର—ନା ମହାରାଜ ! ବନ୍ଦ କରନ୍ତୁ—( ଶୁଷ୍କ କଣ୍ଠରେ )

ଅଶୋକ—ଏ କ'ଣ ଧୀର—ଏତେ ବିମର୍ଷ କାହିଁକି ? ତୁମ୍ଭର ବିରସ ବଦନ—ରୁକ୍ଷ କେଶ—ନିଷ୍ପ୍ରଭ ଚକ୍ଷୁହାଣି ଏବଂ ଏପରି ନିର୍ବୀର୍ଯ୍ୟ ପ୍ରତିଭାର କାରଣ କଅଣ ?

ଧୀର—( ବ୍ୟାକୁଳ ଭାବରେ ) ମହାରାଜ ?

ଅଶୋକ—ଏପରି କଣ୍ଠସ୍ୱର କାହିଁକି ଧୀର, ତୁମେ କାହିଁ ବିଜୟ ଉତ୍ସବରେ ବେଳାପ୍ଲାବୀ ସିନ୍ଧୁ ପରି ଉନ୍ମାଦ ରହନ୍ତ ତା ନ ରହି ଏ କଅଣ କରୁଛ ?

ବୀର —ବିଜୟ ନୁହେ ମହାରାଜ ! ଏ ଯେ ମୋର ଘୋର ପରାଜୟ —

ଅଶୋକ—ପରାଜୟ ? ତୁମ୍ଭର ପ୍ରତିଶୋଧ ନେବା ପ୍ରତିଜ୍ଞା ପୂର୍ଣ୍ଣ ହୋଇଛି, ତୁମ୍ଭର ପିତୃଶତ୍ରୁ ପରାଜିତ ହୋଇଛି—କୃତଘ୍ନତାର ଶାସ୍ତି ମିଳିଛି—ଏବଂ ମୋର ଜୀବନର ଏକ ଶ୍ରେଷ୍ଠ ଉଦ୍ଦେଶ୍ୟ ସାଧିତ ହୋଇଛି—ତଥାପି ତୁମେ ତାକୁ ପରାଜୟ କହୁଛ ? ମୁଁ କିଛି ବୁଝି ପାରୁନାହିଁ, ଶିଳାଦିତ୍ୟଙ୍କୁ ବନ୍ଦୀ କଲା ଦିନଠୁ ତୁମେ ଏପରି ନ ଥିଲ—

ବୀର —ତା କାହିଁ ଥାଆନ୍ତି ? ସେତେବେଳେ ମୁଁ ଯେ ଘୋର ଅନ୍ଧ—ସତ୍ୟ ମହାରାଜ ! ଶିଳାଦିତ୍ୟ ·ବନ୍ଦୀଶାଳରେ ରହି ପ୍ରକୃତ ବନ୍ଦୀ ନୁହେ—ମୁହିଁ ତାକୁ ବନ୍ଦୀକରି ନିଜେ ମୁକ୍ତ ଆକାଶତଳେ ରହି ବନ୍ଦୀ—

ଅଶୋକ— ତୁମର କଥାତ ପ୍ରହେଳିକା ପରି ଲାଗୁଛି —ଏ ପ୍ରଳାପ କାହିଁକି ବୀର ?

ବୀର — ପ୍ରଳାପ ନୁହେଁ ମହାରାଜ ! ଏହା ମୋର ବ୍ୟାକୁଳ ଅନ୍ତରର କରୁଣ ବିଳାପ —

ଅଶୋକ — କଥା କଅଣ ? ତୁମ୍ଭଙ୍କୁ ଏ ଆତ୍ମଗ୍ଲାନି କିଏ ଦେଲା ?

ବୀର — ମୋର ମନ ମୋତେ ଦେଲା — କାଲି ସନ୍ଧ୍ୟାରେ ନଗର ଭ୍ରମଣ କରିବାକୁ ଯାଇ ଯେଉଁ କରୁଣଗୀତ ଶୁଣି ଆସିଲି — ସ୍ୱଦେଶର ଯେଉଁ ନଗ୍ନ ଦାରୁଣ ଦୃଶ୍ୟ ଦେଖି ଆସିଲି— ସେଥିରେ ମୁଁ ବୁଝି ପାରୁଛି ମୋର କାର୍ଯ୍ୟ କି ଭୟାବହ । ମୁଁ ମନୁଷ୍ୟର କାର୍ଯ୍ୟ କରି ନାହିଁ, ମୁଁ ମନୁଷ୍ୟ ନୁହେଁ ପ୍ରେତ ପିଶାଚ — ନା—ତହୁଁ ବଳି ଅଧମ ତହୁଁ ବଳି ନିର୍ମମ ।

ଅଶୋକ—ଏଥିଲାଗି ବିମର୍ଷ ହେବାର କାରଣ ମୁଁ ତ କିଛି ବୁଝି ପାରୁନାହିଁ—ଯୁବକ ।

ବୀର —ଆପଣ ବୁଝିବେ କପରି ? ଜାତିଦ୍ରୋହୀ ହୃଦୟର ଶିଖା-ଜ୍ୱଳା ଆପଣ ଜାଣିବେ କପରି ?

ଅଶୋକ—କଅଣ ଗୁଡ଼ାଏ ବାତୁଳ ପରି-କହୁଛ ବୀର—ଜୟଲାଭ କରି ତୁମର ମସ୍ତିଷ୍କ କଅଣ ବିକୃତ ହୋଇଯାଇଛି ?

ବୀର —ମସ୍ତିଷ୍କ ଠିକ୍ ଅଛି ମହାରାଜ, କିନ୍ତୁ ପ୍ରାଣହିଁ ବିକୃତ ହୋଇ ଯାଇଛି — ଏ ଦୁର୍ନିବାର ଶିଖ୍ର ଜ୍ୱାଳା—କାହିଁ ଗଲେ ନିର୍ବା-ପିତ ହେବ ? ଓଃ — ସହସ୍ର ସହସ୍ରଙ୍କୁ ପତିହୀନା, ପୁତ୍ରହୀନା କରି ସେମାନଙ୍କ କ୍ରନ୍ଦନରେ ଆକାଶ ଅବନୀ ପ୍ରତିଧ୍ୱନିତ କରି କଳିଙ୍ଗରେ ଯେ ନିର୍ମମ ହତ୍ୟା ଲୀଳା ସମାହିତ ହୋଇଛି ତାର ସାକ୍ଷାତ ଦ୍ରଷ୍ଟା ଯେ ଏହି ହତଭାଗ୍ୟ ମହାରାଜ !

ଅଶୋକ — ବାତୁଳ ବାଳକ —

ବୀର —ଠିକ୍ କହୁଛନ୍ତି ମହାରାଜ । ଯଥାର୍ଥରେ ମୁଁ ବାତୁଳ — ତା ନ ହେଲେ ଆପଣ ଆଜ କଳିଙ୍ଗ ସିଂହାସନରେ ବସନ୍ତେ କପରି ? କଳିଙ୍ଗମୟ ମୃତ୍ୟୁର ଆର୍ତ୍ତନାଦ ଉଠନ୍ତା କପରି — କାହିଁ ସେ ପାଟଳି ପୁତ୍ର — ଆଉ କାହିଁ ଏ ତୋଷାଳି — କିଏ ଆପଣଙ୍କୁ ଏଠାକୁ ଆଣିଲା ? କାହାଯୋଗୁଁ ଶସ୍ୟ — ଶାମଳା କଳିଙ୍ଗ ମରୁପ୍ରାନ୍ତରରେ ପରିଣତ ହେଲା ? ଯେଉଁ ଦେଶର ମହିମା ବୃଦ୍ଧି ନିମିତ୍ତ ମୋର ପିତା, ମାତାମହ ସର୍ବସ୍ୱାନ୍ତ ହୋଇଥିଲେ ମୁଁ ହିଁ କଲି ତା'ର ଉଚ୍ଛେଦ ସାଧନ — ବାତୁଳ ନୁହେଁତ କଅଣ ?

ଅଶୋକ — ଯୁବକ ! ତୁମେ କଅଣ ମନେ କରିଛ — ତୁମର ସାହାଯ୍ୟ ବ୍ୟତିରେକେ କଳିଙ୍ଗ ବିଜୟ ଅଶୋକ ପକ୍ଷରେ ଅସମ୍ଭବ । ଯେଉଁ ଅଶୋକ ସମଗ୍ର ଆର୍ଯ୍ୟବର୍ତ୍ତ ଏକାକୀ ବାହୁବଳରେ ଜୟ କରିଛି ତା ପକ୍ଷରେ କଳିଙ୍ଗବିଜୟ ଯେତେ ଦୁଃସାଧ ହେଲେ ମଧ୍ୟ ଅସମ୍ଭବ ନୁହେଁ ବରଂ ଏ ବିଜୟରେ

ତୁମ୍ଭର ମଙ୍ଗଳ ହୋଇଛି—ତୁମର ପ୍ରତିଜ୍ଞା ରକ୍ଷା ହୋଇଛି । ଏଥି ସକାଶେ ତୁମର ମୋଠାରେ କୃତଜ୍ଞ ରହିବା ଉଚିତ— କିନ୍ତୁ ତାହା ପରିବର୍ତ୍ତରେ ତୁମ୍ଭର ମୁଖରେ ଏପରି କଥା ଅସୁନ୍ଦର, ଅସଙ୍ଗତ ଏବଂ ଅମାର୍ଜନୀୟ; ଯଦି ଏତେ କଥା ତୁମ୍ଭର ଥିଲା,ଆଗରୁ ଭବିଷ୍ୟତ ଚିନ୍ତା ନ କଲ କାହିଁକି ? ମୋ ପାଖରେ ଶରଣ ପଶି—କଳିଙ୍ଗ ବିଜୟ—ଆହ୍ୱାନ କରିଥିଲ କାହିଁକି ?

ଧୀର—[ ସ୍ୱଗତଃ ] ଶିଳାଦିତ୍ୟ ଠିକ୍ କହିଥିଲ ପରାଶ୍ରିତ ଏବଂ ପରାନ୍ନଭୋଜୀ ଶ୍ୱାନ ମୁଁ ( ପ୍ରକାଶ୍ୟେ ) ସେହିତ ମୋର ମହାପରାଧ ମହାରାଜ !

ଅଶୋକ—ଯୁବକ ! ଉଦ୍ଭ୍ରାନ୍ତ ପଣରେ ତୁମେ କଅଣ କରୁଛ—ଚାହିଁ ଦେଖ—ମନ ସ୍ଥିର କର—

ଧୀର—ମୃତ୍ୟୁରେ ମଧ୍ୟ ମୋ ମନ ସ୍ଥିର ହେବନାହିଁ ମହାରାଜ ! ମୋର ଶାସ୍ତିର ଆବଶ୍ୟକ,(ବ୍ୟାକୁଳରେ) କହନ୍ତୁ ମହାରାଜ । କି ଶାସ୍ତି ପାଇଲେ ମୋ ପାପର ପ୍ରାୟଶ୍ଚିତ ହେବ ?

ଅଶୋକ - ଶାସ୍ତି ନେବାକୁ ଏତେ ବ୍ୟାକୁଳ କାହିଁକି ? ତୁମ୍ଭର ପ୍ରଳାପ ବାକ୍ୟ ମୁଁ କ୍ଷମା କରୁଛି—

ଧୀର—ପ୍ରଳାପ ବାକ୍ୟ କ୍ଷମା କରନ୍ତୁ ବା ନ କରନ୍ତୁ—ମୁଁ ଚିନ୍ତିତ ନୁହେଁ କିନ୍ତୁ ମୋର ଶାସ୍ତି ଅନ୍ୟ ଦୋଷ ପାଇଁ ଲୋଡ଼ା—

ଅଶୋକ—କେଉଁ ଦୋଷ—

ଧୀର—ଦେଶଦ୍ରୋହୀ ହେଲେ ଯେଉଁ ଦୋଷ ହୁଏ ସେହି ଦୋଷ- ତାହାର ଦଣ୍ଡ—ଆପଣ ବର୍ତ୍ତମାନ ରାଜା—ମୋତେ ଦଣ୍ଡ ଦିଅନ୍ତୁ ।

ଅଶୋକ—( ଟିକିଏ ଚିନ୍ତାକଲା ପରେ ସ୍ମିତହାସ୍ୟରେ କହିଲେ )
ବେଶ୍—ଦଣ୍ଡ ନେବାକୁ—ପ୍ରସ୍ତୁତ ଅଛ— ସେତେବେଳେ
ତର୍କ ଯୁକ୍ତି କରିବନାହିଁ—

ବୀର—ନାହିଁ ମହାରାଜ ।

ଅଶୋକ—ସତ୍ୟ କହୁଛ—ପ୍ରତିଜ୍ଞା କରୁଛ—କୁହ—

ବୀର—ପ୍ରତିଜ୍ଞା କରୁଛି ମହାରାଜ ।

ଅଶୋକ—ଦେଖ—ମୁଁ କିଏ ଜାଣ—

ବୀର—କଳିଙ୍ଗ ବିଜେତା ଏବଂ ମୋର ଆଶ୍ରୟଦାତା ।

ଅଶୋକ—ତେବେ ସ୍ଥିର ଓ ଅବିଚଳିତ ଚିତ୍ତରେ-ମୋର ଦଣ୍ଡାଜ୍ଞା
ଗ୍ରହଣକର, ମୁଁ ତୁମ୍ଭଙ୍କୁ ଏପରି ଦଣ୍ଡ ଦେବି ଯାହା ପୃଥି-
ବୀରେ କେହି କାହାରିକୁ ଦେଇ ନ ଥିବ ମନେରଖ—
ବିନା ଆପତ୍ତିରେ ଗ୍ରହଣ କରିବ—

ବୀର—ମୁଁ ତ ମୃତ୍ୟୁ ପାଇଁ ଭୀତ ନୁହେଁ ମହାରାଜ !

ଅଶୋକ—କିନ୍ତୁ ଏହା ମୃତ୍ୟୁଠାରୁ ଅଧିକ ଚମକପ୍ରଦ ।

ବୀର —ତଥାପି ମୁଁ ପ୍ରସ୍ତୁତ ।

ଅଶୋକ—ଯଦି ତାହାହିଁ ହୋଇଥାଏ ତେବେ [ଚଣ୍ଡାଶୋକ ବୋଲି
ଅଖ୍ୟାତି ପାଇଥିଲେ ମଧ୍ୟ ମୁଁ ମୀଚ କମ୍ବା ଲୋଭୀ ନୁହେ—
କଳିଙ୍ଗ ବିଜୟରେ ଅଶୋକର ପ୍ରଧାନ ସହାୟକ—ଏହି
ନିଅ ( ରାଜଦଣ୍ଡ ଓ ମୁକୁଟ ଧରି ) ଏହି ରାଜଦଣ୍ଡ ସ୍ୱହ-
ସ୍ତରେ ଗ୍ରହଣ କରି ଅଶୋକର ଶାସ୍ତିର ଶୁଭ୍ରତା ଅନୁଭବ
କର—

ବୀର—[ ବିହ୍ୱଳ ହୋଇ ] ମହାନୁଭବ ଉଦାର ମହାରାଜ !
ମୋତେ କ୍ଷମାକରନ୍ତୁ ।

ଅଶୋକ – ବାଳକ ! ଦିଗ୍‌ବିଜୟୀ ଅଶୋକର ଏହା ପ୍ରଥମ ଆଦେଶ
ଏବଂ ପ୍ରତିଭା ପୂଜାର ପ୍ରଥମ ଉପହାର—
ସଭାସଦ୍‌ବର୍ଗ—"ଜୟ କଳିଙ୍ଗପତି ବୀରଙ୍କର ଜୟ"

( ପ ଟ ପ ତ ନ )

—ଷଷ୍ଠ ଦୃଶ୍ୟ

( ସନ୍ନ୍ୟାସୀ ଆଶ୍ରମ, ସମୟ—ପ୍ରଭାତ, ଆଶ୍ରମ ନିକଟ ବୃକ୍ଷମୂଳେ ବେଦୀ, ସେଠାରେ ଶିଳ ରଖାଥାଏ । ଅଳ୍ପକ୍ଷଣ ପରେ ଜଗୁ, ସେଠାଲ ଓ ତର୍କଚଞ୍ଚୁ ଆଶ୍ରମ ଦ୍ୱାର ଫିଟାଇ ବାହାରକୁ ଆସି ବୃକ୍ଷମୂଳେ ବସିଲେ । ପ୍ରଭାତ ପ୍ରକୃତି ସଙ୍ଗେ ସ୍ୱର ମିଳାଇ ସେଠାଲର ଗୁଣୁ ଗୁଣୁ ଗୁଞ୍ଜନ ଝଙ୍କାର ଉଠିଲା । ଜଗୁ ଓ ତର୍କଚଞ୍ଚୁ ଗୀତ ଶୁଣି ପୁଟୁଳି ଫିଟାଇ ଚେର ମୂଳ କୁଟିବାକୁ ଲାଗିଲେ । ସେମାନଙ୍କର ଅବସ୍ଥା ଅନେକ ବଦଳି ଯାଇଥାଏ । ଏହାପରେ ଗୈରିକ ବେଶରେ ଆସିଲା ଚଞ୍ଚଳା—କିଛିକ୍ଷଣ ଦୁହିଁଙ୍କ କାମ ଦେଖିଲା ପରେ ସେଠାଲର ଗୀତ ଶୁଣି ଗଭୀର ସହାନୁଭୂତି ସହିତ କହିଲା )

ଚଞ୍ଚଳା – ମିଶ୍ର ଓ ଜଗୁର କିଛି କିଛି କରିଲ—ମୋର ତ ବାପା କିଛି
କରି ପାରିଲ ନାହିଁ—ଆଖି ଦୁଇଟିତ ଫେରି ଆସିଲା ନାହିଁ ।

ସେଠାଲ—ନାହିଁମା; ମୋର ସେ ପାପ ଚକ୍ଷୁରେ ଦରକାର ନାହିଁ—
ତାହାରି ଯୋଗେ ଜଗତଟାକୁ ଲୋଭ ଲାଳସା ଦୃଷ୍ଟିରେ ଦେଖି
ସର୍ବନାଶ ହୋଇଛି—ସେ ଜଞ୍ଜାଳ ଭଗବାନ କାଢ଼ି ନେଇ
ଭଲ କରି ଅଛନ୍ତି—ବେଶ୍ ଅଛି ତେବେ ତେଳେ ୨ ଦୁଃଖ—
ଚଞ୍ଚଳା—ଦୁଃଖ ହେଉଛି ବାବା—ହେବାରକଥା —

ସେଠା — ତାହିଁ ମା ସେଥିପାଇଁ ଦୁଃଖ ନାହିଁ — ଦୁଃଖ ହେଉଛି ଯେ ମିଶ୍ର ସାଆନ୍ତ କ ଜଗୁପର ମୁଁ ତୋ କାମରେ ଲାଗି ପାରିଲି ନାହିଁ — କାହାର ସେବା କରି ପାରିଲି ନାହିଁ —

ଚଞ୍ଚଳା — ବାବା — ତୁ ମୋର ବେଶୀ କାମ କରିବୁ — ତୋର କରୁଣ ସଙ୍ଗୀତର ମଧୁର ମୂର୍ଚ୍ଛନା କେତେ ହତଭାଗ୍ୟଙ୍କୁ ଆଶା ଦେବ କେତେ ବିପଥଗାମୀଙ୍କୁ ସୁପଥରେ ଆଣିବ — ତୋର ଅନ୍ତରର ଆବେଗ କାହାଣୀ କେତେ ଅଶାନ୍ତ ହୃଦୟରେ ସାନ୍ତ୍ୱନା ଅମୃତ ସେଚନ କରିବ — ଚାଲ — ଆମେ ଦୁହେଁ ଗୀତ ଗାଇ ଗ୍ରାମେ ଗ୍ରାମେ ବୁଲି ଭ୍ରାନ୍ତ ଦେଶବାସୀଙ୍କୁ ନବୀନ ମନ୍ତ୍ର ଶୁଣାଇବା । —

ସେଠାଲି — ଚାଲ ମା — ତେବେ ତୁ ମୋ କାନ୍ଧରେ ବସି ବାଟ କଢ଼ାଇ ନେବୁ — ତୋତେ ଦେଖିଲେ ମୋ ପରି କେତେ ପତିତ ଉଦ୍ଧାର ହେବେ — ତୋର ସ୍ପର୍ଶରେ କେତେ ପାପୀ ତାପି ସୁଧରି ଯିବେ —

ଜଗୁ ଓ ତର୍କ — ଆମେ କଅଣ କରିବୁ ମା ? ଆମକୁ ମଧ୍ୟ ସଙ୍ଗରେ ନେ

ଚଞ୍ଚଳା — ନା — ତୁମ୍ଭେ ଏହି ଆଶ୍ରମରେ ରହି ଆର୍ତ୍ତ ଆତୁରଙ୍କର ସେବା କର — ଦେଖୁ ନାହିଁ ପ୍ରତିଦିନ କେତେ ପୀଡ଼ିତ — କେତେ ସମାଜ ତ୍ୟକ୍ତ --- କେତେ ଭାଇ ଭଉଣୀ ଅସହାୟରେ ମରୁଛନ୍ତି, ଏହି ଆଶ୍ରମକୁ ସେବା ସଦନରେ ପରିଣତ କରି ଦୁହେଁ-ଯାକ ଲାଗିପଡ଼ --- ଶତ୍ରୁ, ମିତ୍ର, ଜଣା ଅଜଣା ଯେ ଆସୁ ସମାନ ସେବା --- ସମାନ ଯତ୍ନ ।

ତର୍କଚଞ୍ଚୁ --- ଶୁଣି ନାହୁଁ ମା --- ଯୌର ରାଜା ହେଲାଦିନୁ ରାଜ୍ୟମୟ ରାସ୍ତା, ଘାଟ, ପାନ୍ଥଶାଳା -- ଜଳାଶୟ, ଚିକିତ୍ସାଳୟ ସ୍ଥାପିତ ହେଲଣି ।

ଚଞ୍ଚଳା --- ହଁ ବାବା ହୋଇଛି --- ରାଜା ସାହାଯ୍ୟ ନ କଲେ --- ଜଣ ଜଣକ ଚେଷ୍ଟାରେ ଏ କାମ ସେତେ ସଫଳ ହୁଅନ୍ତା କି ?

( ସ୍ୱଗତଃ )"ଆହା ଏତେ ଦିନେ ଗୁରୁଦେବଙ୍କର ଜୀବନ
ବ୍ୟାପୀ ସାଧନା ସଫଳ ହେଲା"—

ଜଗୁ —କଅଣ ଭାବୁଛୁ ମା –

ଚଞ୍ଚଳା— ଭାବିବି ଆଉ କଅଣ ବାପ—କେବଳ ଆନନ୍ଦରେ ଅଧୀର
ହୋଇ ପଡ଼ୁଛି ଏହି ନବ ଯୁଗର ଊଷାଲୋକ ଦେଖି—
ତାହା ଯେତେବେଳେ ମଧ୍ୟାହ୍ନ ମାର୍ତ୍ତଣ୍ଡରେ ପରିଣତ ହେବ—
ସେତେବେଳେ ଏକ ନବୀନ ପ୍ରେମର ପୁଲକ ରାଜ୍ୟ, ଧରଣୀକୁ
ସ୍ୱର୍ଗକରି ତୋଳିବ – କାମୀ ନ ଥିବେ—କାମନା ନ ଥିବ—
ତୁମ୍ଭେ ଥାଅ; ମୁଁ ଯାଏ—

ତର୍କ —ତେବେ ଫେରିବୁ ମା । –

ଚଞ୍ଚଳା—ଯେତେବେଳେ ସୁବିଧା ପାଇବି—କାହିଁକି ତୁମ୍ଭେ କ'ଣ
ପାରିବ ନାହିଁ—ମୁଁ ଫେରେ ନ ଫେରେ ତୁମ୍ଭର କାମତ
ନିର୍ଦ୍ଦିଷ୍ଟ ରହିଲା—

ଜଗୁ ଓ ତର୍କ—ହଉ ଯା ମା—କିନ୍ତୁ ଆଶୀର୍ବାଦ କରିଯା—[ ପ୍ରଣାମ
କରିବା ।]

ଚଞ୍ଚଳା – ପ୍ରଭୁ ଅବଲୋକିତେଶ୍ୱର ତୁମ୍ଭର ସହାୟ ହଉନ୍ତୁ—
ଆ ସେଠାକୁ ତୋର ସେହି ଗୀତଟା ଗାଇ ଗାଇ ଚାଲ

( ସେଠାକୁ ଗୀତ ଗାଇବା )

ଦେଖ ଚାହିଁ ନବ ଭାନୁ ନଭେ ଉଇଁଲାଣି ।
ରଙ୍ଗାକରେ ଭଙ୍ଗା ପ୍ରାଣ ଧୀରେ ଛୁଇଁଲାଣି । ଘୋଷା ।
ଫିଟି ଫିଟି ଆସିଲାଣି ଗୋଲକ ତୋରଣ ଦ୍ୱାର,
ତୁଟି ତୁଟି ଗଲାଣିରେ ହିଂସା ବାଦ ପରସ୍ପର,
ଗଗନରେ ସୁଧାରେଖା
ପବନରେ ପ୍ରେମ ଶିଖା,

ଗାଅ ଭାଇ ମଙ୍ଗଳ
ପୁରେ ପୁରେ ଉଚ୍ଛୁଳେ ଚହଳ
ନବ ଧର୍ମ—ଧ୍ୱଜା ସାଜେ,
ପାପ ଭାର ନଇଲାଣି । ୧ ।

( ଗୀତ ଗାଇ ୨ ସେଠାରୁ ଓ ଚଞ୍ଚଳା ବାହାରି ଗଲେ, ଜଗୁ ଓ ତର୍କଚଞ୍ଚୁ ତାଙ୍କୁ ଅନାଇ ରହିଲେ )

(ପ ଟ ପ ତ ନ)

ତୃତୀୟ ଦୃଶ୍ୟ

(ବାଧଗୟା ନଦୀ ତୀର—ସମୟ—ସୂର୍ଯ୍ୟାସ୍ତ—ଧୀର ଏକାକୀ ପ୍ରବେଶ କରି କିଛିକ୍ଷଣ ବିଚରଣ କଲାପରେ ଆରମ୍ଭ କଲେ)

ଧୀର—( ସ୍ୱଗତଃ ) ଆଜି ଏତେ କାଳ ପରେ ପ୍ରତିଜ୍ଞା ମୋର ପୂରଣ ହେଲା—ମୃତ ଦେହ ବକ୍ଷରେ ଧରି ମୁଁ ପ୍ରତିଜ୍ଞା କରିଥିଲି ତାହା ଫଳରେ କଳିଙ୍ଗର ଗୃହେ ଗୃହେ ଦେଖି ମୃତ୍ୟୁର ବିଭୀଷିକା ସୃଷ୍ଟି କଲି । ଭିକ୍ଷୁ ଗୃହରେ ଭିକ୍ଷା ପାଳିତ ହୋଇ ଅଭାବ ମୋର ନଥିଲା କିନ୍ତୁ ଜୀବନର ଦୁର୍ବିପାକରେ —ଯୌବନର ପ୍ରଥମ ଉଚ୍ଛ୍ୱାସରେ କିଏ ମୋତେ ଏହି ନିର୍ମମ ଧ୍ୱଂସ ପଥକୁ ଟାଣି ଆଣିଲା ? ବର୍ତ୍ତମାନ ବୁଝୁଛି ଏ ରକ୍ତ—ସିକ୍ତ ରାଜସିଂହାସନ, ଭିକ୍ଷୁକର ସେ ଜୀର୍ଣ୍ଣ କୁଟୀର ଠାରୁ ମଧ୍ୟ ବହୁଗୁଣରେ ତୁଚ୍ଛ ।

( ହଠାତ୍ ସନ୍ନ୍ୟାସୀର ପ୍ରବେଶ ବୀର ଦେଖି ପ୍ରଣାମ କରିବା )

ବୀର—ଗୁରୁଦେବ ! ମୋତେ ପ୍ରକୃତ ପଥ ଦେଖାଇ ଦିଅନ୍ତୁ—ଏହି ଅତୃପ୍ତି ବର୍ଦ୍ଧକ ରାଜପଦ ଲୋଡ଼ା ନାହିଁ ।

ସନ୍ନ୍ୟା—ଲୋଡ଼ା ନ ଥିଲେ ପର୍ଣ୍ଣକୁଟୀରରୁ କିଏ ତୋତେ କଳିଙ୍ଗର ରାଜପ୍ରାସାଦକୁ ଆଣନ୍ତା—ବିଧାତାର କୌଣସି କାର୍ଯ୍ୟ ନିରର୍ଥକ ନୁହେ ବତ୍ସ—

ବୀର—ଏହି ହତ୍ୟା—ଏହି ନୃଶଂସତା—ଏ ସବୁ କଅଣ—

ସନ୍ନ୍ୟା—ନିର୍ମଳ ଶାନ୍ତି ଫେରିବାର ଏ ଝଟିକାହିଁ ପୂର୍ବ ଲକ୍ଷଣ ବୀର ?

ବୀର—ଶାନ୍ତିର ପୂର୍ବ ଲକ୍ଷଣ ହତ୍ୟା ? ଅଦ୍ଭୁତ !

ସନ୍ନ୍ୟା—ହଁ—କିନ୍ତୁ ସେ ଶାନ୍ତିଟା ପୂର୍ବାପେକ୍ଷା ଅପୂର୍ବ ହେବ—

ବୀର—ମୋତେ କିନ୍ତୁ ଆପଣଙ୍କର ସେହି କୁଟୀର ଅଧିକ ଶାନ୍ତିପ୍ରଦ ଥିଲା ଗୁରୁଦେବ !

ସନ୍ନ୍ୟା—ତାହାତ ଏଇଠାରେହିଁ ପାଇବୁ—ପ୍ରାସାଦରେ ରହି କୁଟୀରବାସୀ ଭାବରେ ଚଳ—ଶାନ୍ତି ଓ ଅଶାନ୍ତି ତ ବାହ୍ୟିକ-ବସ୍ତୁ ନୁହେ—ତାହା ମାନସିକ ଅବସ୍ଥା ମାତ୍ର ।

ବୀର—ତେବେ କୁହନ୍ତୁ ଗୁରୁ—କି ସାଧନା କଲେ ସେ ଅବସ୍ଥା ପାଇବି—

ସନ୍ନ୍ୟା—ଭୁଲି ଗଲୁଣି—ମୁଁ ତ ବରାବର କହିଛି କାମନାର ବିନାଶରେ ଦୁଃଖର ବିନାଶ—ଦୁଃଖ ଯିବ ଗଲା ବାକିଯାହା ରହିଲା—ତାହାହିଁ ହେଉଛି ମାନବତ୍ୱର ଚରମ ସିଦ୍ଧି—

ବୀର—କିନ୍ତୁ ଆପଣ ତ ମୋତେ ଏ କାମନା ସ୍ରୋତକୁ ଠେଲି ଦେଇଛନ୍ତି—

ସନ୍ନ୍ୟା—ନଚେତ୍—ତୋର କାମନା ବିନାଶ-ସାଧନା ସଫଳ ହୁଅନ୍ତା ନାହିଁ—ଯାହାର ହୃଦୟରେ ମୂଳରୁ କାମନା ନାହିଁ—ସେ

କାମନା ଜୟ କରିବ କାହିଁ ?—ନା, ଧୀର ଭୋଗ୍ୟବସ୍ତୁ ସମ୍ମୁଖରେ ରଖି ତ୍ୟାଗ କରିବାହିଁ ହେଉଛି ପ୍ରକୃତ ତ୍ୟାଗ ।

ଧୀର—ତଥାପି ଗୁରୁଦେବ ! ସେ ଅଜ୍ଞାତ ସାଧନାହିଁ ମୋର ଶ୍ରେୟସ୍କର ଥିଲା—ଆଜି ଏ ଧ୍ୱଂସ ତାଣ୍ଡବରେ କି କୁକ୍ଷଣରେ ହାତ ଦେଇଛି—କୁଆଡ଼େ ଯାଉଛି—ନିଜେ ଜାଣେନା—

ସନ୍ନ୍ୟା—ଏହି କଠୋର ପରୀକ୍ଷା ତୋର ଆବଶ୍ୟକ ଥିଲା, ଧୀର ।

ଧୀର—ଧ୍ୱଂସ ଭିତର ଦେଇ ପରୀକ୍ଷା—କୋଟିଏ ସଂହାର କରି ଗୋଟିକର ଆତ୍ମପ୍ରତିଷ୍ଠା—

ସନ୍ନ୍ୟା—ତା ନୁହେଁ—ଗୋଟିକର ସଂହାରରେ କୋଟି କୋଟିର ପ୍ରାଣ ପ୍ରତିଷ୍ଠା—ଏହା ସ୍ରଷ୍ଟାଙ୍କର ସୃଷ୍ଟି ପ୍ରତି ମହା କରୁଣାର ନିଦର୍ଶନ । ଅନିବାର୍ଯ୍ୟ ସଂଘର୍ଷଣରେ ପାପକ୍ଷୟ ନ ହେଲେ ଜଗତରେ ପୁଣ୍ୟ ପ୍ରତିଷ୍ଠା ସମ୍ଭବ ହୁଅନ୍ତା କି ?

ଧୀର—ତଥାପି ଗୁରୁ ! ଏତେ ହତ୍ୟାପରେ ଏ ରାଜ୍ୟପଦ ଗ୍ରହଣ ନ କରି ଅନୁତାପ କରିବା ଉଚିତ । ଆପଣ ସିନା ମୋତେ ଏହା ଭିତରକୁ ଠେଲିଦେଲେ ।

ସନ୍ନ୍ୟା—ଅର୍ଥାତ୍ ତୁ ଧ୍ୱଂସ ସାଧନ କରି ପଳାଇ ଯାଇ ଅନୁତାପ କରିବାକୁ ବ୍ୟାକୁଳ ହେଉଥିଲୁ—ଭୁଲିଗଲୁ, ଅନୁତାପ ଆତ୍ମକ୍ଷୟକାରିତା ଭିତରେ ସେତେ ସଜୀବ ନୁହେ—ଯେତେ ହୁଏ ସ୍ୱକାର୍ଯ୍ୟର ବିପରୀତ ସମ୍ପାଦନରେ । ତୁ କଳିଙ୍ଗର ଧ୍ୱଂସ ସାଧନ କରି ଅନୁତାପ ଛଳରେ ଆତ୍ମଗ୍ଲାନି କରୁଥିଲୁ—ମୁଁ ସେ ଧ୍ୱଂସ ଭିତରୁ ନୂଆ ସୃଷ୍ଟି କରିବାକୁ ପ୍ରବୃତ୍ତି ଦେଲି—

ଧୀର—କିନ୍ତୁ ମୁଁ ଯେ ବଡ଼ ଦୁର୍ବଳ—ଏହା ଅସମ୍ଭବ ବୋଧ ହେଉଛି

ସନ୍ନ୍ୟା—ମାନବ ଅମୃତର ସନ୍ତାନ—ଅସୀମ ଶକ୍ତିର ଆଧାର—ସେ ଦୁର୍ବଳ ନୁହେ—

ଧୀର—ଗୁରୁ ! ତେବେ କଅଣ କରିବ ଆଦେଶ ଦିଅନ୍ତୁ ।

ସନ୍ୟା—ଅଧୀର ହେଉନ୍ତୁ କାହିଁକି ବୀର ! ମନରୁ ସମସ୍ତ ଗ୍ଳାନି ଗୁଡ଼ି
ନବଜୀବନ ଆରମ୍ଭ କର । ଦେଶ ସାରା ଯେଉଁ ହାହାକାର
ଉଠାଇଛ, ଯେଉଁ ଶ୍ୟାମଳ କ୍ଷେତ୍ର ମହାପ୍ରାନ୍ତର କରିଛ,
ସେଠାରେ ମୈତ୍ରୀ, ପ୍ରୀତି ଓ ସେବାର ତ୍ରିବେଣୀ ଧାରା ବୁହାଅ,
ପ୍ରତ୍ୟେକ କଳିଙ୍ଗୀ ବୁଝୁ ସହସ୍ର ସହସ୍ରଙ୍କର ମୃତ୍ୟୁ ଫଳରୁ
କୋଟି କୋଟି, ନବ ଜୀବନର ଅମର ମନ୍ତ୍ର ପାଇଛନ୍ତି—
ପରସ୍ପର ପ୍ରତିଦ୍ୱନ୍ଦ ଯାଇ ମିଳନ ହୋଇଛି । ଈର୍ଷା ଯାଇ
ଭ୍ରାତୃଭାବ ବଢ଼ିଛି, ଆର୍ତ୍ତ ଅନାଥର ଆଶ୍ରୟ ପାଇଁ ଗ୍ରାମେ ୨
ସାହାଯ୍ୟକେନ୍ଦ୍ର ଅନୁଷ୍ଠାନ କର, ଏକା ସଙ୍ଗରେ ପ୍ରକୃତି-
ପୁଞ୍ଜର ଧର୍ମ,କର୍ମ ସେବାର ଆୟୋଜନ କର ତୁମେ ଜଗତକୁ
ଦେଖାଅ ଯେ ଭୋଗ-ବିଳାସରେ ବୁଡିଗଲେ ସୁଦ୍ଧା ମନୁଷ୍ୟ
ସାଧନା ସେବା ଫଳରେ କେତେ ଦୂର ତ୍ୟାଗୀ ହୋଇପାରେ,
ତୁମ୍ଭର କାର୍ଯ୍ୟରେ ଫଳ ପ୍ରତ୍ୟାଶା ନ ଥିବ ବା ଅହମିକା
ନ ଥିବ, ନିନ୍ଦା ବା ପ୍ରଶଂସାରେ ତୁମେ ବିଚଳିତ ହେବନାହିଁ,
ଦେଖିବ—ଦେଶର ରାଜା ହୋଇ ତୁମେ କପରି ପ୍ରଜାର
ପ୍ରାଣର ଦେବତା ପରି ପ୍ରତିଷ୍ଠିତ ହେବ ।

(ସନ୍ୟାସୀ ଯେମିତି ଆସିଥିଲେ ସେମିତି ଚାଲିଗଲେ ।ଧୀର କଟୁକ୍ଷଣ
ଚନ୍ଦ୍ରାକର ତାଙ୍କ ଯିବା ପଥରେ ଗଲେ । )

( ପ ଟ ପ ତ ନ )

## ୪ର୍ଥ ଦୃଶ୍ୟ

ସ୍ଥାନ—ପାଟଳିପୁତ୍ରର ପ୍ରାସାଦ ଉଦ୍ୟାନ । ସନ୍ଧ୍ୟାବେଳେ ସଙ୍ଘମିତ୍ରା ଉଦ୍ୟାନରେ ଏକୁଟିଆ ଗୀତ ଗାଉଥିଲେ । ଗୀତର ପ୍ରତି ଛତ୍ର ସଂସାରର ଅକରୁଣ ପ୍ରକୃତିରେ ଆଲୋଡ଼ିତ । ଅଶୋକ ଉଦ୍ୟାନକୁ ଆସି ଗୀତ ଶୁଣି ମୁଗ୍ଧ ମନରେ ଦୂରରେ ଅଟକିଗଲେ । ଗୀତର ଭାବ ତାଙ୍କ ମନକୁ ଜିଜ୍ଞାସୁ କରିଦେଲା ।

ଗୀତ

ସଙ୍ଘମିତ୍ରା— ସତ୍ୟ ଜୀବନର କାହିଁ ଗୋ ଜଗତେ
ମିଥ୍ୟା ପୂରିତ ଛଳନା,
ଚିନ୍ତା କାମନା ଭରିଛି ପରାଣେ
ନ ହେବ ତା'ର କଳନା ॥
ତଥାପି ନର ଭାବେନା ଭୁଲି
ସଂସାର ସୁଖ ଅଳୀକ ବୋଲି
ମାତିଛି ଖାଲି କାମନା ପୂରଣେ
ଦବାନଳି ବେଗି ଯାତନା ॥

ଅଶୋକ—( ପ୍ରବେଶ କରି ) କି ମଧୁର ଏହାର ସଙ୍ଗୀତ, ମ
ଯେପରି ଗୋଟାଏ ଅଜଣା ରାଇଜକୁ ଟାଣି ନେଇ ଦ
ଆଶା ଆଶଙ୍କା ବିଷାଦ ସବୁ ଗୀତ ଶୁଣୁ ଶୁଣୁ ପାଶୋର
ଯାଏ, ପ୍ରଖର ହୋଇ ଉଠେ ଗୋଟାଏ କଥା — ବ
ପ୍ରକୃତିରେ ତାହା କଅଣ ଏତେ ଭୀଷଣ !

ସଂ —( ଅଶୋକଙ୍କୁ ଦେଖି ) ବାବା—ତୁମେ କେବେ
ଆସିଲଣି, ଏତେ ଚିନ୍ତିତ ଦିଶୁଛ କାହିଁକି ?

ଅଶୋକ—ନା ମା, ଚନ୍ତନ ନୁହେ—ତୁ ଗୀତଗାଉଥିଲୁ—ମୋତେ
କପର ନୂଆ ଲଗିଲା—ସେଥି ପାଇଁ ଶୁଣୁଥିଲି, ସେଦିନ ସେ
ସନ୍ୟାସୀ ମଧ୍ୟ ଏହିପରି ଏକ କଥା କହିଗଲା —

ସଂଘ—କେଉଁ ସନ୍ୟାସୀ ବାବା

ଅଶୋକ—ମୁଁ କଅଣ ତାଙ୍କୁ ଚହ୍ନେ ? ଈଶ୍ୱର ତାଙ୍କୁ ତା'ର ଗୁରୁ
ବୋଲି କହିଲା—

ସଂଘ—ଈଶ୍ୱରର ଗୁରୁ ! ସେ ତ ଜଣେ ମହାପୁରୁଷ—

ଅଶୋକ—ତୁ କପର ତାଙ୍କୁ ଚିହ୍ନି ପାରିଲୁ—କିଏ ଚହ୍ନାଇ ଦେଲା ?

ସଂଘ—ଚହ୍ନାଇଲା ମୋର ମନ —ଚହ୍ନିଲି ତାଙ୍କର ବଦନର
ଅପୂର୍ବ ଶାନ୍ତମୟ ପ୍ରଭାରୁ—ଏବଂ ସାକ୍ଷାତ ହୁଏ କେବେ
ଏଇଠି, କେବେ ଅବା ଧର୍ମଶାଳାରେ—

ଅଶୋକ—ତୁ କଅଣ ତେବେ ଧର୍ମଶାଳାକୁ ଯାଉ ? ସନ୍ୟାସୀକୁ
କଅଣ ରାଜାଜ୍ଞା ଲଙ୍ଘନ କରି ନିକହି ଉଦ୍ୟାନକୁ ଛାଡ଼ିଦିଏ !

ସଂଘ—ବାବା ! ତୁମେତ ମୋତେ ଧର୍ମଶାଳାକୁ ଯାଇ ଗରିବ ଦୁଃଖୀ
ମାନଙ୍କୁ ସାହାଯ୍ୟ କରିବାକୁ ଅନୁମତି ଦେଇଛ—ଆଜି ଏ
ପ୍ରାସାଦତ ମୋର ବୋଲି କହୁଚ —ଏଠି ପୁଣି ରାଜାଜ୍ଞା କଅଣ

ଅଶୋକ—ତଥାପି ମା—( ଗମ୍ଭୀର ହେବା )

ସଂଘ—ତେବେ ବାବା, ମନା କରିଦିଅ, ମୁଁ ଘର କଣରେ ଚୁପ୍ ଚାପ୍
ବସି ରହିବି ।

ଅଶୋକ—ନା, ନା, ନା,—ସେଥିରେ ତୁ ବେମାର ହୋଇଯିବୁ ।
ଆଉଥର ସେଇଆ କରିଥିଲୁ ବଡ଼ କଷ୍ଟହୋଇଛୁ ମା—ଆଉ
ମୋର କିଏ ଆପଣାର ଅଛି । ତୁ କଣ କରୁଛୁ କର—
ତେବେ ଟିକିଏ ସତର୍କ ହୋଇ କରୁଥା, ଯେପରି ରାଜବଂଶର
ମର୍ଯ୍ୟାଦା ହାନି ନ ହୁଏ—

ସଂଘ—ସେ ହିଗରେ ନିଶ୍ଚିନ୍ତ ଥାଆନ୍ତୁ—[କ୍ଷଣକ ପରେ) ବାବା ।
ଅଶୋକ—କଅଣ ମା କହ—ଏତେ ସଙ୍କୋଚ କାହିଁକି ?
ସଂଘ—ଏତେ ଯୁଦ୍ଧ ଏତେ ନରହତ୍ୟା ପରେ ପୁଣି କାହିଁକି ସେହି ନୃଶଂସ ଅଭିନୟ—ସେହି ରକ୍ତ ପିପାସ ?
ଅଶୋକ—ଏ ଯେ କ୍ଷତ୍ରିୟର ରାଜନୀତି ମା !
ସଂଘ—କିନ୍ତୁ ଏତ ମନୁଷ୍ୟର ଧର୍ମନୀତି ନୁହେଁ ବାବା ! ଏଥିରେ କଅଣ ପ୍ରକୃତ ଉନ୍ନତି ହେବ ? ହେଲେ ତାହା କେତେ-ଦିନ ପାଇଁ—
ଅଶୋକ—[ସ୍ୱଗତଃରେ) ସେ ଦିନ ସନ୍ନ୍ୟାସୀ ମଧ୍ୟ ଠିକ୍ ଏହି କଥା କହୁଥିଲେ ।

ସଂଘ—ଆଜ ଯେଉଁମାନେ ଆପଣଙ୍କୁ ପ୍ରବଳ ଜାଣି ବନ୍ଦନା ଗାଉଛନ୍ତି ହୁଏତ କାଲ ସୁଯୋଗ ପାଇଲେ ସେହି ମାନେହିଁ ଆପଣଙ୍କ ବକ୍ଷରେ ଛୁରି ବସାଇବେ; ଏହାହିଁ କ'ଣ ରାଜନୀତି ବାବା !
ଅଶୋକ—ଏତେତ ଭାବି ଦେଖିନାହିଁ ମା—ଏକ ସାମ୍ରାଜ୍ୟ ହେଲେ, ଏକ ରାଜ୍ୟ ହେଲେ ପ୍ରଜା ପ୍ରାଣରେ ଭ୍ରାତୃଭାବ ଆସିବ ।
ସଂଘ—ଏହା ଆଗରୁ ଅନେକଥର ଏପରି ଚେଷ୍ଟାକରି ବିଫଳ ହୋଇଅଛନ୍ତି—ରାମ ରାଜ୍ୟରେ ଯାହା ହୋଇନାହିଁ—ଯୁଧିଷ୍ଠିରଙ୍କର ଧର୍ମରାଜ୍ୟରେ ଯାହା ଘଟିନାହିଁ—ତାହା ଏହି ଘୋର କଳି କାଳରେ ଘଟିବ ?

ଅଶୋକ—(ଚମକିତ ହୋଇ) ପ୍ରକୃତ କଅଣ ତାହା ! ଆଚ୍ଛା ମା ତୁ କ'ଣ ସେ ସନ୍ନ୍ୟାସୀଠାରୁ ଦୀକ୍ଷା ନେଇଛୁ ? ତାଙ୍କୁତ ସେଦିନ ଦେଖି ମୋ ମନ ସ୍ୱତଃ ନଇଁ ପଡ଼ିଲା—! ବର୍ତ୍ତମାନ ମନେ ପଡ଼ୁଛି—କି ଗୁଣରୁ ମୁକୁଟ ମଣ୍ଡିତ ରାଜଶିର, ମୁଣ୍ଡିତ ମସ୍ତକ ସନ୍ନ୍ୟାସୀ ପାଖରେ ନତ ହୁଏ ?

ସଂଘ—ଏ ଯାଏ ଦୀକ୍ଷା ନେବାର ଯୋଗ୍ୟତା ମୋର ଜନ୍ମି ନାହିଁ ପିତା । ବୃକ୍ଷମୂଳ ବା ଗିରିକନ୍ଦର ବାସୀ, ଶାକାନ୍ନ ଭୋଜୀ ସନ୍ନ୍ୟାସୀ, ଯେଉଁ ରାଜ୍ୟରେ ସମ୍ରାଟ ପିତା, ତାହା ତୁଳନାରେ ସମଗ୍ର ପୃଥିବୀର ଏକତ୍ରୀକୃତ ସମ୍ପଦ ଯେ କିଛି ନୁହେଁ—ତା' ମନରେ ଚିର ଶାନ୍ତି—ତାର ପ୍ରାଣରେ ସମସ୍ତଙ୍କ ପାଇଁ ସମାନ ସହାନଭୂତି—ମଙ୍ଗଳ ଛଡ଼ା ଅମଙ୍ଗଳର କଥା ତା ମୁଖରେ ନଥାଏ ।

ଅଶୋକ—ହେ ଈଶ୍ୱରେ, ଆଗ୍ରେ ସତ କହ ମା, ତୁ ତାଙ୍କ ସହିତ କ ଆଲୋଚନା କରୁ—

ସଂଘ—ତୁମର ମଙ୍ଗଳ କଥା ପିତା—

ଅଶୋକ—ଦୂର ବାତୁଳୀ—ସମ୍ରାଟ ଅଶୋକ, ଯାହାର ଇଙ୍ଗିତରେ ରାଜ୍ୟ ବିପର୍ଯ୍ୟସ୍ତ ତାରପୁଣି ଅମଙ୍ଗଳ କିଏ କରିବ ?

ସଂଘ—ଆଉ କେହି ନୁହେଁ ତୁମେ ନିଜେ

ଅଶୋକ—ମୁଁ ନିଜେ ?—କ'ଣ ଗୁଡ଼ାଏ କହୁଛୁ ମା ।

ସଂଘ—ଯାହା ପ୍ରତ୍ୟହ ପ୍ରତ୍ୟକ୍ଷ କରେ ତାହା ହିଁ କହୁଛି ବା ବା ।

ଅଶୋକ—କଅଣ ପ୍ରତ୍ୟକ୍ଷ କରୁ ?

ସଂଘ—ସେ ଅତି ଭୀଷଣ କଥା ବାବା—ଯେ ଆସେ—

ଅଶୋକ—ଆସେ ।—କିଏ ଆସେ ?—ପ୍ରାସାଦ ରକ୍ଷୀ କଅଣ କରୁଥାନ୍ତି, ସେମାନେ କ'ଣ—

ସଂଘ—ରକ୍ଷୀ କଅଣ କରିବେ ପିତା—ସେ ମୂର୍ତ୍ତି ଅମାନୁଷିକ,ରକ୍ଷୀଙ୍କର ତ କିଛି ଦୋଷ ନାହିଁ—

ଅଶୋକ—ତେବେ କ'ଣ ଦେଖୁ ମା—ଶୀଘ୍ର କହ—ସତ୍ୟକହ—

ସଂଘ—ଦେଖେଁ—ନିଦ୍ରିତ ହେଲାପରେ ତୁମେ ନାନା ବିଭୀଷିକାପୂର୍ଣ୍ଣ କଥା କୁହ—ଅତି ଆତୁର ଭାବରେ ଭୀତ ହୋଇ ଡାକୁଥାଉ—ବେଳେ ବେଳେ ଘୋର ନିଦ୍ରାରେ ଚିଇଁବାକୁ

ହଠାତ୍ ଶତ୍ରୁନ୍ୟଙ୍କୁ ଆକ୍ରମଣ କର—ମୁଁ ଯଦି ଜାଗି ନ ବସନ୍ତି ତେବେ ଆତ୍ମହତ୍ୟା କରନ୍ତି—

ଅଶୋକ—ଆତ୍ମହତ୍ୟା !—ତୋ'ର ଏସବୁ ସ୍ୱପ୍ନର ବିକାର—ଭାରତ ବିଜୟୀ ଅଶୋକର ଏ ଦୁର୍ବଳତା—( ଅବିଶ୍ୱାସ୍ୟ ହାସ୍ୟ )

ସଂଘ—ସେ ମିନା ଜାଗ୍ରତାବସ୍ଥାରେ, ସୁପ୍ତିରେ ଯେ ତୁମ୍ଭେ ଶିଶୁ। ସେ ଅବସ୍ଥାରେ ପ୍ରତିମୂର୍ତ୍ତି ରଖି ପାରିଲେ ଦେଖନ୍ତ ତୁମ୍ଭେ କେତେ ଦୁର୍ବଳ—କେତେ ଅସହାୟ—

ଅଶୋକ—ତେବେ ମୋତେ ଜାଗ୍ରତ କର ଦେଖାଉ ନାହୁଁ କାହିଁକି ?

ସଂଘ—କନ୍ଧିଳତ । ସୁପ୍ତି ଭାଙ୍ଗିଲେ ତୁମ୍ଭେ ସମ୍ରାଟ ଅଶୋକ । କାହିଁକି ଗତ ରାତ୍ରି କଥା କଅଣ ତୁମ୍ଭର ମନେ ନାହିଁ ? ତୁମ୍ଭେ ନଟେ ମୋତେ କୁଣ୍ଢାଇଧରି ଦୁଇଟି ଭୀଷଣ କାଳମୂର୍ତ୍ତି ଦେଖାଉଥିଲ ।

ଅଶୋକ—ଏ ସବୁ ନିଶ୍ଚୟ ସ୍ୱପ୍ନର ବିକାର ମା—

ସଂଘ—ସେ ଯଦି ସ୍ୱପ୍ନ ହୁଏ ତେବେ ସେ ସ୍ୱପ୍ନ ବଡ଼ ଭୀଷଣ—ବଡ଼ ଅଦ୍ଭୁତ—ବଡ଼ ସମ୍ଭବ । ତୁମ୍ଭେ ଆଉ ଯୁଦ୍ଧ ବିଗ୍ରହ କର ନାହିଁ ପିତା !

ଅଶୋକ—ଦୂର୍ ପାଗଳି । ରାଜ୍ୟ ରକ୍ଷା କରିବା—ବୃଦ୍ଧି କରିବା ଦେଶକୁ ଗୋଟାଏ ସାମ୍ରାଜ୍ୟ କରିବା ଯେ ଅଶୋକର ଆବାଲ୍ୟ ସ୍ୱପ୍ନ ।

ସଂଘ—ଜନ୍ତୁ ହତ୍ୟା କରିବା—ବିଭୀଷିକା ସୃଷ୍ଟି କରିବା—ଛାରଖାର କରିବା—ଏତ ସ୍ୱପ୍ନ ନୁହେଁ ?

ଅଶୋକ—ଯୁଦ୍ଧର ଆନୁଷଙ୍ଗିକ ସେ ତାହା ହିଁ ମା—

ସଂଘ—ତେବେ ସେ ଯୁଦ୍ଧ ଛାଡ଼—ତୁମ୍ଭ ସାମ୍ରାଜ୍ୟ ତୁମ୍ଭର ଅଛି, କେହି ନେବାକୁ ଆସୁନାହିଁ—କେହି ତୁମ୍ଭର ଗୌରବରେ କଳଙ୍କ ଦେଉନାହିଁ—ଜୟ ଯଦି କରିବ ପ୍ରେମରେ ଜୟ କର ।

ଅଶୋକ— ଦିଲ୍ ପରି କଥା—ପ୍ରେମରେ ରାଜ୍ୟ ଜୟ ହେବ ?
ରାଜ୍ୟ ବଢ଼ିବ ?

ସଂଘ—ହେବ ନାହିଁ ? ତକ୍ଷଶୀଳାକୁ ତ ତୁମ୍ଭେ ନିଜେ ସେହିପରି
ଜୟ କରିଥିଲ—ଭାବି ଦେଖିଲ ସେ ଜୟ କି ଅକ୍ଷୟ
ଅବିନଶ୍ୱର, ପ୍ରାଣରେ ପ୍ରାଣର ମିଳନ—

ଅଶୋକ—ତୁ ରାଜନୀତି କଅଣ ବୁଝିବୁ—ସେ ଅତି ନିର୍ମମ—ଅଥଚ
କଠୋର କର୍ତ୍ତବ୍ୟ—(କଥାର ଗତି ଫେରାଇବା ଚେଷ୍ଟାରେ)
ହଁ ସନ୍ନ୍ୟାସୀ କଅଣ କହନ୍ତି ?

ସଂଘ—ସେ ଆଶାର କଥା କହନ୍ତି—ତୁମ୍ଭର ମନ ପରିବର୍ତ୍ତିତ,ହେଲେ
କାର୍ଯ୍ୟର ଗତି ମଧ୍ୟ ବଦଳି ଯିବ !

ଅଶୋକ—( ଚିନ୍ତା କରି ) ହଉ ତୁ ଏବେ ଅନ୍ତଃପୁରକୁ ଯା—

( ସଂଘମିତ୍ରାର ପ୍ରସ୍ଥାନ ପରେ )

(ସ୍ୱଗତଃ) ସଂଘ ଯାହା କହିଲା କଅଣ ସତ୍ୟ ? କଳିଙ୍ଗରୁ
ଫେରିଲି ଦିନଠାରୁ ମନ ମୋର ଏହିପରି ଅହେତୁକୀ ଆଶ-
ଙ୍କାରେ ବ୍ୟାକୁଳ ହୋଇ ପଡ଼ୁଛି କାହିଁକି ?—ତାପରେ ସେହି
ସନ୍ନ୍ୟାସୀ ବାକ୍ୟରେ, କାର୍ଯ୍ୟରେ ଗୋଟାଏ ନୂତନ ଅନୁଭୂତି
ଜାଗି ଉଠୁଛି ।'ଏହା ଅବସାଦ, କ୍ଳାନ୍ତ ଓ ମସ୍ତିଷ୍କର ଦୁର୍ବଳତା
କି ଗୋଟାଏ ପ୍ରକୃତ ପରିବର୍ତ୍ତନ, କିଛି ଭାବି ଠିକ୍ କରି
ପାରୁନାହିଁ—ଦେଖେ [ ଧୀରେ ଧୀରେ ପ୍ରସ୍ଥାନ ]

( ପ ଞ୍ଚ ପ ରି ବ ର୍ତ୍ତ ନ )

୪ମ ଦୃଶ୍ୟ

ତୋଷାଳିର କାରାକକ୍ଷ, ସମୟ ରାତ୍ରୀ ।

(କକ୍ଷ ମଧ୍ୟରେ ଶିଳାଦିତ୍ୟ ଚିନ୍ତାକୁଳଭାବେ ଦଣ୍ଡାୟମାନ । ରାଣୀ ଗୋଟିଏ ଖଟ ଉପରେ ଆସୀନା । ଶିଳାଦିତ୍ୟଙ୍କ ମୂର୍ଦ୍ଧରେ ଅସ୍ଥିରତା ଏବଂ ରାଣୀ ଚେହେରାରେ ତୃପ୍ତିର ଲକ୍ଷଣ ବିଦ୍ୟମାନ । କିଛିକ୍ଷଣ ପରେ ଗମ୍ଭୀର ବିଷାଦରେ ଶିଳାଦିତ୍ୟ କହିଲେ )

ଶିଳା—ରାଣୀ ! ଭାଗ୍ୟ କଅଣ ନ କରେ—ଆଜି ଯେ ସମ୍ପଦର ଚରମ-ଶିଖରରେ, କାଲି ସେ ବିପଦର ଅତଳ ତଳେ । ଆଜି ଯେ ରାଜା, କାଲି ସେ ପଥର ଭିକାରୀ—ଆଜି ଲକ୍ଷ ଶିର ଯା'ର ପଦତଳେ ଅବନତ, ଲକ୍ଷ ମୁଖ ଯା'ର ଜୟଗାନରେ ଉନ୍ମତ୍ତ, କାଲି ସେ ହୁଏ ଅତି ତୁଚ୍ଛ ନଗଣ୍ୟ, ଆଜି ଯେ ସମ୍ରାଟ—କାଲି ସେ ବନ୍ଦୀ—ନିପୀଡ଼ିତ—ଲାଞ୍ଛିତ—

ରାଣୀ—ସେ କଥା ସତ ମହାରାଜ ! ଭାବିଲେ ପ୍ରାଣ ଶିହରି ଉଠୁଛି—କିନ୍ତୁ ତାହାଠାରୁ ବଳି ମର୍ମବିଦାରକ ହେଉଛି କଳିଙ୍ଗର ଅଧିପତି ଆଜି ତାଙ୍କର ପ୍ରାସାଦରେ, ତାଙ୍କର କାରାକକ୍ଷରେ ତାଙ୍କର ସେବକ କର୍ତ୍ତୃକ ବନ୍ଦୀ ।

ଶିଳା—ଖାଲି ଏତିକି—କୁଟୀରବାସୀ ଭିକ୍ଷୁକ, ଦରିଦ୍ରଘୋଷା ଯୁବକ, ସେ ହେଉଛି ସମ୍ରାଟର ପ୍ରତିଦ୍ୱନ୍ଦୀ—କେବଳ ପ୍ରତିଦ୍ୱନ୍ଦୀ ନୁହେ ବିଜେତା । ଉଃ—ଏ ଅପମାନ; ଏ ଲାଞ୍ଛନା, ସହ୍ୟ କରିବା ଆଗରୁ, ମୋର ମୃତ୍ୟୁ ନ ହେଲା କାହିଁକି ?

ରାଣୀ—କାହିଁକି ମହାରାଜ ଶିଳାଦିତ୍ୟଙ୍କୁ ବନ୍ଦୀ ଅବସ୍ଥାଟା କଅଣ
ମଧୁମୟ ଲାଗୁ ନାହିଁ ?

ଶିଳା—(ବିସ୍ମିତ) ଏ କ'ଣ କହୁଛ ରାଣୀ ?

ରାଣୀ—( ହସି ହସି ) ଯାହା କହିବ କଥା—ଥରେ ମୋ' ଦେଶର
କଥା,ମୋର ପିତା ଭ୍ରାତାଙ୍କକଥା ମନେ ପକାଇଲେ । ସ୍ୱାଧୀନ
ବିଜୟ ନଗରକୁ କିଏ ପରାଧୀନ କଲା ? କେଉଁ ରାଜ୍ୟର
ରାଜା ପ୍ରଜା ମିଳି ତାହାର ସର୍ବସ୍ୱ ଛାରଖାର କଲେ ? ତୁମ୍ଭେ
ଖାଲି ବନ୍ଦୀ ହୋଇଛ,ମୋ ପରି ପିତୃମାତୃ ହୀନା ହୋଇ ଶତ୍ରୁର
ସେବିକା ତ ହୋଇ ନାହଁ ।

ଶିଳା—ଯନ୍ତ୍ରଣା ବେଳେ ଏ କି ପରିହାସ କରି ମର୍ମଦାହ ବଢାଉଛ
ରାଣୀ ?

ରାଣୀ—ରାଣୀ ବୋଲି ତୁମ୍ଭର କରୁଣା ହୃଦୟ—କିନ୍ତୁ ପିତୃଶତ୍ରୁର
ପ୍ରେମିକା ହେବା ମୋର ଦାସୀତ୍ୱର ରୂପାନ୍ତର ମାତ୍ର—

ଶିଳା—ଚୁପ କର ରାକ୍ଷସୀ ! ( କ୍ରୋଧରେ )

ରାଣୀ—ଚୁପ୍ ହେଲେ ସେ ବୁଦ୍ଧି ଯାଇବ ନାହିଁ—ଯାହା ହେଉ
ଏତେଦିନେ ବୁଦ୍ଧି ମୋର ବହୁକାଳର ଚେଷ୍ଟା ସଫଳ
ହୋଇଛି—ଏବେ ପ୍ରତିଶୋଧ । ତୁମ୍ଭର ମୃତ୍ୟୁତ ସୁନିଶ୍ଚିତ
ତେବେ ତାହାଙ୍କୁ ଅନ୍ତର ବଧ ଅର୍ଥ କରିବା ମୋର କାର୍ଯ୍ୟ ।

ଶିଳା—ପ୍ରବୋଧ ଦିଅ ସଇତାନ—( ରାଗରେ)

ରାଣୀ—ପ୍ରବୋଧ ଦେବି—ତେବେ କହିବି କାହାକୁ ? ଜାଣ ରାଜା—
ଶତ୍ରୁଦମନର ନିର୍ଦ୍ଦୋଷ ପୁତ୍ର କାହାର ଚକ୍ରାନ୍ତରେ ନିହତ—
କାହାର କୌଶଳରେ ସ୍ୱର୍ଣ୍ଣ ଅପହୃତା ? ଏଇ ମୋର—

ଶିଳା—ଓଃ ଦାନବୀ, ପିଶାଚୀ, କାଳସର୍ପିଣୀ—

ରାଣୀ—ହଁ କହିଯାଅ; ତୁମ୍ଭର ବଚନଗୁଡ଼ିକ ଗୁଡାକ ମନ୍ଦ ଶୁଭୁନାହିଁ—
ନିର୍ବୋଧ ସ୍ୱର୍ଣ୍ଣ—ତୁମ୍ଭେ ଖାଲି ନାରୀର ମୁଖବାକ୍ୟକୁ

ଅମୃତ ମନେ କରି ଆକଣ୍ଠ ପାନ କରିଥିଲି—କିନ୍ତୁ ତା'ର ହୃଦୟ ଯେ ଷଡ଼ଯନ୍ତ୍ରର ଅଭେଦ୍ୟ ଦୁର୍ଗ, ତା'ର ନୟନ କଟାକ୍ଷ ଯେ ପ୍ରାଣହନ୍ତ୍ରୀ ବିଦ୍ୟୁତ—ଅନ୍ଧ ତୁମ୍ଭେ—ତୁମେ କାହୁଁ ବୁଝିବ ?

ଶୀଳା—କଅଣ କହିଲୁ ( ରାଗରେ )

ରାଣୀ—ସ୍ଥିର ହୋଇ ଶୁଣିଯାଅ—ଆଉ ସମୟ ପାଇବ ନାହିଁ—ତୁମ୍ଭେ ମନେ କରିଥିଲ ଯେ ମୁଁ ତୁମ୍ଭର ଅନୁକମ୍ପାରେ ମୁଗ୍ଧ ହୋଇ ତୁମ୍ଭଠାରେ ମନପ୍ରାଣ ବିନିମୟ କରିଛି—ତାହା ନୁହେ—କାୟା ବିନିମୟ କରି ଧର୍ମ ତୁଟିଛି—କିନ୍ତୁ ଯେ କଠୋର କର୍ତ୍ତବ୍ୟରେ ଅଗ୍ରସର ହୋଇଥିଲି—ପିତାମାତାଙ୍କର ଯେଉଁ ଅନ୍ତିମ ଅନୁରୋଧ—ନାରୀ ମୁଁ—ତଥାପି ତାହା ରକ୍ଷା କରିଛି, ସେ ପ୍ରତିଜ୍ଞା ପୂରଣ କରିଛି—ଜାଣ ? ମନ ଜଳପୋଡ଼ି ଯାଉଛି ନା ? ମୁଁ ତ ତାହାହିଁ ଚାହେଁ—

ଶୀଳା—ଦୂର ହୁଅ ରାକ୍ଷସୀ । ଉଃ—ମୁଁ କ'ଣ ନ କରିଛି—ବିଷକୁ ଅମୃତ ଜ୍ଞାନରେ ଆକଣ୍ଠ ପାନ କରିଛି । ଉଃ—ମୋର ଗତି କଅଣ, ମୋର ପ୍ରାୟଶ୍ଚିତ୍ତ କାହିଁ ? ବିଧାତା—ଏହି ମୁହୂର୍ତ୍ତକ ଆଗେ ତୋର ନିନ୍ଦା କରୁଥିଲି—କିନ୍ତୁ ବର୍ତ୍ତମାନ ବୁଝୁଛି ତୁ କେତେ ଦୟାଳୁ—ବୀର—ବୀର, କାହିଁ ଅଛ ବୀର ! ମୋତେ ମୃତ୍ୟୁ ଦେଇଯାଅ, ଏ ଶାସ୍ତି ମୋର ଅସହ୍ୟ, ମୃତ୍ୟୁ—ମୃତ୍ୟୁ, ମୃତ୍ୟୁରେ ମୁଁ ପ୍ରାୟଶ୍ଚିତ୍ତ କରେ ।

( ବୀରର ପ୍ରବେଶ

ବୀର—ମୃତ୍ୟୁରେ ତ ପ୍ରାୟଶ୍ଚିତ୍ତ ହୁଏ ନାହିଁ ରାଜା !

ଶୀଳା—ମୋର ଦୁଷ୍କାର୍ଯ୍ୟର ଯେ ଅନ୍ତ ନାହିଁ, ବିଜୟୀ !

ବୀର—ବେଶ, ଅନନ୍ତ ସୁକୃତ ଅର୍ଜନ କର ।

ଶିଳା—ସୁକୃତ ଅର୍ଜନ କରିବ ? ତେବେ ନରକର କୁମ୍ଭୀକୀଟ କଏ ହେବ ? ମୋତେ ମୃତ୍ୟୁ ଦିଅ—ତୁମ୍ଭର ପୁଣ୍ୟ ହେବ, ମୁଁ ଜ୍ୱାଳା ଯନ୍ତ୍ରଣାରୁ ମୁକ୍ତି ପାଇ ଯାଏ ।

ମିତ୍ର—ମୁଁ ତୁମ୍ଭଙ୍କୁ ବନ୍ଧନରୁ ମୁକ୍ତ ଦେଲି—ଇଚ୍ଛା ହୁଏ ଆସ ମୋ ସହିତ ମିଳି ପିତାପୁତ୍ର ହିଁ କଳିଙ୍ଗର ସେବା କରିବା—ମାନବକୁ ମହିମାନ୍ୱିତ କରିବା—ଜଗତର କଲ୍ୟାଣ ସାଧନରେ ଜୀବନ ଉତ୍ସର୍ଗ କରିବା ( ଦ୍ୱାରମୁକ୍ତ କରିବା ) ନଚେତ୍ ନିଅ ତୁମ୍ଭ ରାଜ୍ୟ ଘର—ମୁଁ ଫେରାଇ ଦେଉଛି ।

ରାଣୀ—ଫେରାଇ ଦେବ : ଏହିତ ଦେଖ —(ହଠାତ୍ ଶିଳାଦିତ୍ୟଙ୍କୁ ଛୁରିକା ଘାତ କରି ଦୌଡ଼ି ଧରିବାକୁ ଯିବା ) ହାଃ—ହାଃ— ହାଃ— ଧରିବ— ଧର—[ନିଜ ବକ୍ଷରେ ମାରି] ଗଲି ରାଜା, ଇହଲୋକରେ କାର୍ଯ୍ୟ ଶେଷ ହୋଇଛି—ପର ଲୋକରେ ଅନ୍ୟ ସମ୍ବନ୍ଧ ।

(ପ ଟ ପ ତ ନ)

ଷଷ୍ଠ ଦୃଶ୍ୟ

(ସ୍ଥାନ—ରାଜପଥ, ସମୟ—ସୂର୍ଯ୍ୟାସ୍ତ । ସେଠାଲି ଓ ଚାନ୍ଦିଲା ଦୁହେଁ ବହୁ ଦୂରରୁ ଚାଲି ଆସୁଛନ୍ତି । ପଥଶ୍ରମରେ ଦୁହେଁ ଅନ୍ଧ ହେଲେଣି ତେବେ ବି ଯେମିତି ଗୋଟିଏ ନିଶାରେ ବିଭୋର ହୋଇ ଚାଲୁଛନ୍ତି)

ସେଠାଲି—ମା' ଏମିତି ଆଉ କେତେ ଚାଲୁଥିବୁ—ଏ ଯାତ୍ରାର କ'ଣ ଅନ୍ତ ନାହିଁ ?

ଚଞ୍ଚଳା—କାହିଁକି, ତୋତେ କଅଣ କଷ୍ଟ ହେଉଛି—ଆ, ତେବେ ଏଇଠି ଟିକିଏ ବସି ଦମ୍ ନେବା ।

ସେଠା—ନାହିଁ ମ,ଁ ମୋ କଥା କହୁନାହିଁ—

ଚଞ୍ଚଳା ତେବେ—

ସେଠାଲି—ମୁଁ ତୋ'କଥା କହୁଛି । ତୋ''ର ତ ଏ ସବୁ ଅଭ୍ୟାସ ନାହିଁ ।

ଚଞ୍ଚଳା—ମୋ କଥା ଛାଡ଼ପୁଅ—ସାରା ଜୀବନ ଯାକ ବୁଲୁଥିଲେ ମୋ ଦୁଷ୍କୃତର ପ୍ରାୟଶ୍ଚିତ୍ତ ତ ହେବ ନାହିଁ ।

ସେଠାଲି—ଦୁଷ୍କୃତ ତୋର ନ ସୀମା ଛାଡ଼ି ଯାଇଛି ମା—ଅନ୍ଧ ବୋଲି ମୁଁ କଅଣ କରୁଛି ବୁଝିପାରୁନାହିଁ । ତୋର ସେବା ଶୁଶ୍ରୂଷା ଯତ୍ନ—

ଚଞ୍ଚଳା—ଥାଉ,ଥାଉ ପୁଅ ସେ କଥା ଉଠା ନା—

ସେଠାଲି—ହଉ ମା ମୋର ଆଉ ଗୋଟାଏ କଥା ମନେ ହେଉଛି ।

ଚଞ୍ଚଳା—କହୁ ନାହୁଁ—

ସେଠାଲି—ମୁଁ କହୁଛି, ଏଇ ଯେଉଁ ଲଢ଼େଇ ଲାଗିଥିଲା—ସେଥିରେ ହଜାର ହଜାର ଖଣ୍ଡିଆ ଦଣ୍ଡିଆ ହୋଇ ପଡ଼ିଥିବେ ଅନେକଙ୍କର ଦେଖିବାକୁ ଶୁଣିବାକୁ,ପଦେ ଆହା କରିବାକୁ କେହି ନଥିବେ—ଆମେ ତାଙ୍କ ସେବା କରନ୍ତେ କି—

ଚଞ୍ଚଳା—ସେଥିପାଇଁ ତ ଗୁରୁଙ୍କ ଆଦେଶରେ କଳିଙ୍ଗକୁ ଯାଉଛୁ—ସେଠି ମୋର ତୋହରି ପରି ହଜାର ହଜାର ଅନ୍ଧ ଲେଙ୍ଗଡ଼ା ପୁଅ ଅନାଇ ରହିଥିବେ—

ସେଠାଲି—ମୁଁ ତ ଅନ୍ଧ ମା, ଆଉ କଣ କରି ପାରିବି—ତେବେ ଯେଉଁ କାମରେ ଲଗାଇ ଦେବୁ ସେଇଥିରେ ଲାଗିଥିବି—

ଚଞ୍ଚଳା—ତୋତେ କଷ୍ଟ କରିବାକୁ ହେବନାହିଁ—ଭଗବାନ୍ ତୋ ଆଖି ନେଇ ତୋ ପ୍ରାଣରେ ଖାଲି ସଙ୍ଗୀତର ଉତ୍ସ ଖୋଲି

ଦେଇ ଅଛନ୍ତି—ମୁଁ ସେବା ଶୁଶ୍ରୂଷା କଲାବେଳେ ତୁ ତୋର ମଧୁର ଗୀତ ଗାଇ ତାଙ୍କୁ ଭୁଲାଇ ରଖିବୁ—ସତେ ବାପ ତୋ ଗୀତ ଶୁଣିଲେ ମନରେ ଆଶା ହୁଏ ଯେ ପାପିର ପାପ ଯେତେ ବେଶୀ ହେଲେ ମଧ୍ୟ, ପତିତ ପାବନଙ୍କର କରୁଣା-ପଣ ତାହାଠୁ ବହୁତ ବେଶୀ ।

ସେଠାଲ—ସେଥିରେ ମୋର କ ବାହାଦୁରୀ ଅଛି ମା—ତୋ'ର ଭାବ, ତୋର ଭାଷା, ତୋ'ର ଶିକ୍ଷା ତୋ'ର ପ୍ରାଣ, ଖାଲି ମୋ ମୁଁହରୁ ଯାହା ପ୍ରତିଧ୍ୱନିତ ହୁଏ—

ଚଞ୍ଚଳା—ହଉ ଗ୍ଲଲ ବାପ, ସେଇ ଗୀତଟା ପୁଣି ଗାଇ ଗାଇ ଯିବା—

ସେଠାଲ—                    ଗୀତ

ମଳୟାନିଳେ ସାରି ଅଖିଳେ ଗାଉଛି ନିତି ।
ମନ୍ଦ୍ରେ ମନ୍ଦ୍ରେ ରନ୍ଧ୍ରେ ରନ୍ଧ୍ରେ ବନ୍ଦନା ଗୀତି । ଧ୍ରୁ ।
କଇବା ମିଛ ମୋହେ ମଜ୍ଜି
ପରମ ପରଶ ତ୍ୟଜି,
ଭରମରେ କର୍ମିଳପି ଭୋଗ କୁମତି । ୧ ।
ଭାଙ୍ଗ ଭାଇ ମାୟା ଖେଳା ଖେଦ କରନା
ସୁଧାସିନ୍ଧୁ ତୀରେ ବସି ଶୋଷେ ମରନା,
ମନ ଭରି ପିଅ ବାରି—        ପାପ ତାପ ଯିବ ହାରି,
ଧ୍ୱନି ହେବ ଜୀବନରେ ଆନନ୍ଦ ଗୀତି । ୨ ।
( ସେଠାଲକୁ ବାଟ କଢ଼ାଇ ଚଞ୍ଚଳାର ପ୍ରସ୍ଥାନ )

( ପଞ୍ଚ ପତନ )

### ୭ମ ଦୃଶ୍ୟ

(ଖଣ୍ଡଗିରି ନବ ନିର୍ମିତ ଗୁମ୍ଫା ଇତ୍ୟାଦି ---ସ୍ଥାନେ ସ୍ଥାନେ ପ୍ରସ୍ତର ନିର୍ମିତ ପଥ, ଅର୍ଦ୍ଧ ପରିଷ୍କୃତ ଜଙ୍ଗଲ, କେଉଁଠାରେ "ଅନୁଶାସନ" ସ୍ତମ୍ଭ--- କେଉଁଠାରେ ଅବା ସୁନ୍ଦର କାରୁକାର୍ଯ୍ୟ ମଣ୍ଡିତ ଗୁମ୍ଫାର ଦ୍ୱାରଦେଶ, କାଳ—ଊଷା—କଳିଙ୍ଗେଶ୍ୱର ଐର ସ୍ତମ୍ଭାବଳି ଓ ଗୁମ୍ଫା ସବୁ ପରିଦର୍ଶନ କରୁଥିଲେ —କେଉଁଠି କିପରି କାର୍ଯ୍ୟ ହୋଇଛି ତାହା ନିରୀକ୍ଷଣ କରୁଥିଲେ କେତେବେଳେ ପ୍ରସ୍ତର ଖଣ୍ଡ ଉପରେ ବସି ପଡ଼ି ନିଜକୁ ଧନ୍ୟ ମନେ କରୁଥିଲେ କିଛି କ୍ଷଣ ପରେ ମନ୍ତ୍ରୀ ପ୍ରବେଶ କରି ଅଭିବାଦନ କଲେ )

ଐର —କି ମନ୍ତ୍ରୀ ! ବିନ୍ଧାଣୀମାନେ ଆଜି ଏତେବେଳ ଯାଏ ଆସି ନାହାନ୍ତି ଯେ, ସେମାନଙ୍କର ତ ଅତି ପ୍ରତ୍ୟୁଷରୁ ଆସି କାର୍ଯ୍ୟ ଆରମ୍ଭ କରିବାର କଥା ।

ମନ୍ତ୍ରୀ —ସେମାନଙ୍କର ତ ଆଉ କିଛି ବାକି ନାହିଁ ମହାରାଜ ।

ଐର —ଅନୁଶାସନ ସବୁ ?

ମନ୍ତ୍ରୀ —ତା ମଧ୍ୟ ସବୁ ସେମାନେ ଖୋଳି ସାରି ଛନ୍ତି—

ଐର —ସୀମାଚଳ, ତାମ୍ରଲିପ୍ତର ।

ମନ୍ତ୍ରୀ—ହଁ ମହାରାଜ — ପାନ୍ଥଶାଳା ଚିକିତ୍ସାଳୟ ବିହାର ସମସ୍ତ ପ୍ରସ୍ତୁତ

ଐର —ରାସ୍ତାଘାଟ — ସେତୁ ?

ମନ୍ତ୍ରୀ —ରାଜାଜ୍ଞାରେ ସମସ୍ତ ନିର୍ମିତ, ନିର୍ଦ୍ୱନ୍ଦ୍ୱରେ ନିର୍ଭୟରେ ପଥିକ ଆଜିକାଲି ରାଜ୍ୟର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ଚଳାଚଳ ହୋଇ ପାରୁଛନ୍ତି—ସ୍ଥାନେ ସ୍ଥାନେ କୂପ ପୁଷ୍କରିଣୀ ବିଦ୍ୟାପୀଠ ମଧ୍ୟ ନିର୍ମିତ ହୋଇଛି—

ଐର —ବେଶ—ଆହୁରି କର—ଗ୍ରାମେ, ଗ୍ରାମେ ଏହି ସବୁ ପ୍ରତିଷ୍ଠିତ ହେଉ; ଗୃହସ୍ଥ, ପଥିକ, ଭିକ୍ଷୁ, ବନ୍ଦୀଗୃହୀ କାହାରି ଯେପରି କୌଣସି ଅଭାବ ନ ରହେ—ଏ ସବୁ ପାଇଁ ମୋ'ର ରାଜକୋଷ ଉନ୍ମୁକ୍ତ । ଅଶିକ୍ଷା, ଅଧର୍ମ, ଅଭାବ, ରୋଗ

ଯନ୍ତ୍ରଣାରେ କେହି ଜଣେ ଯେପରି କଷ୍ଟ ନ ପାଏ; ଜଣେ ଯେପରି କେହି ମନେ ନ କରେ ରାଜା ତା'ର ଦୁଃଖରେ ଉଦାସୀନ ବୋଲି—

ମନ୍ତ୍ରୀ —ଯେ ଆଜ୍ଞା ମହାରାଜ—

ଐର—ଆଜି ମୈତ୍ରୀ—ପ୍ରୀତି, ସାମ୍ୟ, ସେବା, ଏହି ଚୁକ୍ତିଟି ହେଉଛି ଐରର ରାଜନୀତି, ଏକଥା ଘୋଷଣା କରିଅ। ପିତୃପିତାମହଙ୍କର ଗିରିଦୁର୍ଗ —ଏହି ଖଣ୍ଡଗିରି—ଦୀନ ଦୁଃଖୀଙ୍କର ପ୍ରଧାନ ପୀଠ ହେଉ, ଐରର ନିବାସ ତୋଷାଳି ରାଜପୁରୀ ନୁହେ ଏହିଠାରେ—ଉପରେ ଉନ୍ମୁକ୍ତ ଗଗନ, ମଧ୍ୟରେ ଅନୁନ୍ନତ ଗିରିଶିଖର—ତଳେ ଶ୍ୟାମଳା ଧରଣୀ—ତାର ଚିର ନୈସର୍ଗିକ ଶୋଭାରେ ମୋତେ ଭୁଲାଇ ରଖିବ। ରାଜ୍ୟ ଶାସନର ଆବିଳତା—ସମାଜ ବନ୍ଧନର ସଂକୀର୍ଣ୍ଣତା ଏବଂ ଲୋକାଚାରର ଯଥେଚ୍ଛାଚାରିତା ଗୁଡ଼ି ଐରର ଏହିଠାରେ ହିଁ ଶାନ୍ତି ମିଳିବ, ଦୁସ୍ଥର ସେବା କରି—ସଭୟଙ୍କୁ ଅଭୟ ଦେଇ—ନିରାଶ୍ରୟର ଆଶ୍ରୟ ହୋଇ ମୋର ପ୍ରାଣର ଇଚ୍ଛା ଏହିଠାରେ ପୂର୍ଣ୍ଣ ହେବ।

(ଦୌବାରିକର ପ୍ରବେଶ ଓ ପ୍ରଣାମ)

ଐର —କ'ଣ ?—

ଦୌବା—ଜଣେ ସନ୍ନ୍ୟାସୀ ଓ ସନ୍ନ୍ୟାସିନୀ ଆପଣଙ୍କର ସାକ୍ଷାତ ପ୍ରାର୍ଥୀ

ଐର —ସନ୍ନ୍ୟାସୀ, ସନ୍ନ୍ୟାସିନୀ ? ଯାଅ ମନ୍ତ୍ରୀ ଶୀଘ୍ର ଘେନିଆସ ! ମୂଖ ଦୌବାରିକ ଜାଣେ ନାହିଁ ସନ୍ନ୍ୟାସୀମାନଙ୍କର ଐର ନିକଟକୁ ଅବାଧ ଗତି। (ମନ୍ତ୍ରୀଙ୍କର ପ୍ରସ୍ଥାନ ଓ ଅଳ୍ପପରେ ସନ୍ନ୍ୟାସୀ ବେଶୀ ଅଶୋକ ଓ ସଂଘମିତ୍ରାଙ୍କୁ ନେଇ ପ୍ରବେଶ)

ଐର —(ପ୍ରଣାମ କରି) ଇଏ କଏ (ଆଶ୍ଚର୍ଯ୍ୟରେ) ସମ୍ରାଟ ? ଆପଣଙ୍କର ଇଏ କି ବେଶ ?

ଅଶୋକ—ତୁମେ ରାଜା ତୁମର ଏ ବେଶ କାହିଁକି କଲ ?

ବୀର—ରାଜା ହେଲେ ମଧ୍ୟ ଆଜନ୍ମ ଭିକ୍ଷୁ ପାଳିତ, ପ୍ରାୟଶ୍ଚିତ୍ତ ଛଳରେ ରାଜପଦ ଗ୍ରହଣ—ସେବାହିଁ ମୋର ଧର୍ମ ।

ଅଶୋକ—ମୁଁ ମଧ୍ୟ ଏତେଦିନ ବୁଝିଛି ; ରାଜା ପ୍ରଜାର ସେବକ-ରାଜକୋଷ ପ୍ରଜାର ସଞ୍ଚିତ ଅର୍ଥ । ସେଥିରୁ ବିଳାସ ନିମିତ୍ତ ବ୍ୟୟ କରିବା ଦସ୍ୟୁତା ।

ବୀର—ତେବେ ଆପଣ କଣ ବୌଦ୍ଧ ଦୀକ୍ଷା—

ଅଶୋକ—ଗ୍ରହଣ କରିନାହିଁ, କରିବି ବୋଲି ଏଠାକୁ ଆସିଅଛି ! କାହାନ୍ତି ତୁମ ଗୁରୁ—ସଂଘମିତ୍ରା ମଧ୍ୟ ତୁମ୍ଭର ଗିରିଗୁମ୍ଫା ଦେଖିବାକୁ ଜିଦ୍ କଲା—ତେଣୁ ଗୋପନରେ ଏ ଆଗମନ

ବୀର—ବୌଦ୍ଧ ଦୀକ୍ଷା ଲାଗି କିଏ ଆପଣଙ୍କୁ ପରାମର୍ଶ ଦେଲା ?

ଅଶୋକ—କାହିଁକି, କଣ ମନ୍ଦ ହେଲା ?

ବୀର—ମନ୍ଦ ନୁହେଁ ସମ୍ରାଟ, ଜଗତରେ ଯଦି କିଛି ଭଲଥାଏ ତେବେ ତାହା ଏହି ଦୀକ୍ଷା [ନୀରବ)

ଅଶୋକ—ନୀରବ ହୋଇ କଣ ଭାବୁଛ ?

ବୀର—ଭାବୁଛି—ଆପଣଙ୍କର ସେ ସାମ୍ରାଜ୍ୟ ବିସ୍ତାର ଏଥିରେ ତ ସାଧିତ ହୋଇପାରିବ ନାହିଁ +

ଅଶୋକ—ଏଥିରେ ହେବନାହିଁ ତ ଆଉ କେଉଁଥିରେ ହେବ—ଆଗେ ଭାବୁଥିଲି ଭାରତରେ ଏକ ସାମ୍ରାଜ୍ୟ ସ୍ଥାପନ କରି ସମସ୍ତଙ୍କୁ ଏକ ଜାତୀୟତାରେ ମିଶାଇ ଦେବି କିନ୍ତୁ କନ୍ୟା ସଂଘମିତ୍ରା ମୋର ଚକ୍ଷୁ ଫିଟାଇ ଦେଇଛି-କଳିଙ୍ଗ ବିଜୟର ଦାରୁଣ ହତ୍ୟାକାଣ୍ଡରେ ମୋର ଜିଘାଂସା ବୃତ୍ତି ବିଳୟ ପାଇଁଛି —ପ୍ରକୃତ ପୁଞ୍ଜର ଆକ୍ଷେପ ଉକ୍ତି "ଚଣ୍ଡାଶୋକ" ମୋର ଯୋଗ୍ୟ ପଦବି-ଗୋଟିଏ କାମନା ନ ପୂରୁଣୁ ଅନ୍ୟ ଗୋଟିଏ ଫଣି ଟେକୁଛି—ଦେଖନ୍ତ, ଭାବୁଛି ଯେତେ, ପାଉଛି

ଚେତେତ ଆକାଙ୍କ୍ଷା ବଢ଼ୁଛି—ନା ଧୀର, ସେ ପଥ ମୁଁ
ଗ୍ରହଣ କଲି ।

ଧୀର—ଆପଣଙ୍କର ଉଦ୍ଦେଶ୍ୟ କି ଅମହତ୍ ନ ଥିଲା ସମ୍ରାଟ ?

ଅଶୋକ—ନ ଥିଲା ସତ୍ୟ କିନ୍ତୁ ଆହୁରି ମହତ୍ତର ଉଦ୍ଦେଶ୍ୟ ଏବଂ
ମହତ୍ତମ ପଥରେ ଗଲେ—

ଧୀର—କି ପଥରେ ମହାରାଜ ?

ଅଶୋକ—ସଙ୍ଘ କହୁଛି ତା'ର ଗୁରୁ ନିର୍ଦ୍ଦିଷ୍ଟ ପଥ—ସେ ପଥରେ
ଆବିଳତା ନାହିଁ—ଅଧର୍ମିକା ନାହିଁ- ବ୍ୟକ୍ତିତ୍ୱ ନାହିଁ—- ଅନ୍ୟ
ବିଜୟ ସ୍ପୃହା ନାହିଁ—ଅଛି କିନ୍ତୁ ସଦାନନ୍ଦମୟ ଆତ୍ମତ୍ୟାଗର
ମୋହନ ମହିମା—ସମଷ୍ଟି ସତ୍ତାରେ ବ୍ୟକ୍ତିତ୍ୱକୁ ହଜାଇବା
ସୋପାନ—ନିଜକୁ ସର୍ବୋତଭାବେ ଶେଷ କରି ଅମରତ୍ୱ
ଅର୍ଜନ କରି ାର ପନ୍ଥା ଏବଂ ସର୍ବୋପରି ଅଛି—
"ଅହିଂସା ପରମୋଧର୍ମ"

ଧୀର—ଏ ଯେ ସର୍ବତୋଭାବେ ବୌଦ୍ଧ ଦୀକ୍ଷା—

ଅଶୋକ—ବୌଦ୍ଧ ଦୀକ୍ଷା କି ବେଦ ଦୀକ୍ଷା ମୁଁ ବୁଝିନାହିଁ, ଏତିକି କିନ୍ତୁ
ବୁଝିଛି ଯେ ଏହା ମାନବ ଆତ୍ମାର ଚରମ ବିକାଶ—ମୁଁ
ଚାହେଁନା ଦୁଃଖର ବିନାଶ—ବରଂ ମୋ'ର ବ୍ୟାକୁଳ ଅନ୍ତର
ଚାହେଁ ପୃଥିବୀରେ ଯେତେ ଯେଉଁଠି ଦୁଖ ଅଛି ସବୁ ପୁଞ୍ଜିଭୂତ
ହୋଇ ମୋ'ଠି ଉପରେ ଆଉ, କିନ୍ତୁ ବିଶ୍ୱର ମଙ୍ଗଳ ହେଉ ।
କାମନା ଉନ୍ମତ୍ତ ଜଗତ ପୁଣି ପ୍ରେମର ପବିତ୍ର ସ୍ପର୍ଶରେ ପୁଲକିତ
ହେଉ. ଶତ୍ରୁ ଏବେ ଶକ୍ତିରେ ପରାଭୂତ ନ ହୋଇ ପ୍ରୀତିରେ
ମିତ୍ର ପାଲଟି ଯାଉ, ଧର୍ମ, କର୍ମ, କାମନା ସମସ୍ତ ବିସର୍ଜନ
ଦେଇ, ସମସ୍ତ ବିନମ୍ର କରି, ମାନବ ପ୍ରକୃତ ମାନବତ୍ୱକୁ
ଅର୍ଜନ କରୁ—ଅଖିଳ ସଂସାର କେବଳ ପରୋପକାରର
ଅସୀମ ଜ୍ୟୋତିରେ ଜ୍ୟୋତିଃସ୍ନାନ ହେଉ—

ବୀର—ଯୌବନର କର୍ମଭୂମି, କଷ୍ଟାର୍ଜିତ ସାମ୍ରାଜ୍ୟ—ବିଭବ ଏ ସବୁ ?

ଅଶୋକ—ଏ ସବୁ ? କ୍ଷୁଦ୍ର ଭାରତ କି କ୍ଷୁଦ୍ରତମ ମଗଧ ଅଶୋକର କର୍ମକ୍ଷେତ୍ର ନୁହେ—ଜଗତର ମାନବ ହୃଦୟ ତାହାର କର୍ମଭୂମି—ମୃଷ୍ଟିମେୟ ସୈନ୍ୟ ସାମନ୍ତ ତାହାର ସହାୟ ନୁହନ୍ତି—ତାର ସହାୟ ନିଜର ବିଶ୍ୱମଙ୍ଗଳ ପ୍ରବୃତ୍ତି—ଏହି ଦୀକ୍ଷାରେ ପିତା ପୁତ୍ରୀ ଦୁଇଜଣ ବାହାରିଛୁ ।

ବୀର—( ଆନନ୍ଦ ଅଧୀର ) ଠିକ୍ କହିଛନ୍ତି ମହାରାଜ । ତେବେ କହନ୍ତୁ ସମ୍ରାଟ ମୁଁ କଅଣ ଏଥିରେ କିଛି କରି ପାରିବି ନାହିଁ ? ମୋର' କଅଣ କିଛି ଯୋଗ୍ୟତା ନାହିଁ ?

ସଂଘ—ନାହିଁ କାହିଁକି ? ଏ ତ ଜଣକର କାର୍ଯ୍ୟ ନୁହେଁ—ଏ କାର୍ଯ୍ୟର ତ କୌଣସି ନିର୍ଦ୍ଦିଷ୍ଟ ସୀମା ନାହିଁ । ଅସୀମ ସଂସାର—ଅସଂଖ୍ୟ ମାନବ ଏବଂ ଅନନ୍ତ କର୍ମ ପଦ୍ଧତି—ଏଥିରେ ତ ସମସ୍ତଙ୍କର ସମାନ ଅଧିକାର ?

ବୀର—ତେବେ ଚାଲନ୍ତୁ ସମ୍ରାଟ ! ଚାଲ ସମ୍ରାଟ ପୁତ୍ରୀ—ରାଜପଦର ବିଡ଼ମ୍ବନା ବିସର୍ଜନ ଦେଇ ତିନିହେଁ ମିଳି ଏ କର୍ତ୍ତବ୍ୟ ସାଧନରେ ନିଜକୁ ଉତ୍ସର୍ଗ କରିବା—ଭିକ୍ଷୁବ୍ରତ ନେଇ ଗ୍ରାମେ, ଗ୍ରାମେ, ବୁଲି ଦେଶେ ଦେଶେ ଏହି ପ୍ରେମ ମନ୍ତ୍ର ବିତରଣ କରିବା—ହତାଶକୁ ଆଶାଦେବା ମୃତ୍ୟୁକୁ ଅମୃତର ସନ୍ଧାନ ଦେବା—ଅନୁତାପୀକୁ ସାନ୍ତ୍ୱନା ଦେଇ ଏ ଜୀବନ ଧନ୍ୟ କରିବା—ଏ ସାଧନାର ପ୍ରକୃଷ୍ଟ କ୍ଷେତ୍ର ସୌଷ୍ଠବ ପୂର୍ଣ୍ଣ ରାଜପ୍ରାସାଦ ନୁହେଁ ।

( ସନ୍ନ୍ୟାସୀର ପ୍ରବେଶ )

ସନ୍ନ୍ୟାସୀ—କିଏ କହିଲା ନୁହେଁ—ଏ ସାଧନାର କ୍ଷେତ୍ର, ପ୍ରାସାଦ ଓ କୁଟୀର ଉଭୟ ଗୃହ ପ୍ରାଙ୍ଗଣହିଁ ଏ ସାଧନାର ଏବଂ ଶ୍ରେଷ୍ଠ କ୍ଷେତ୍ର, ଦେଶର ରାଜଶକ୍ତି ଏ ଧର୍ମର ସର୍ବଶ୍ରେଷ୍ଠ ସହାୟକ ।

ବୀର ଓ ସଙ୍ଘ—( ପ୍ରଣାମ କରି ) ହଠାତ୍ କେଉଁଆଡ଼େ ଆସିଲେ ?

ସନ୍ନ୍ୟାସୀ—କୁଆଡ଼ୁ କଣ ମା—ସନ୍ନ୍ୟାସୀର ଯେ ସବୁ ସମାନ ଗତି ।

ଅଶୋକ—କିଏ ଆପଣ ଦେହଧାରୀ ଧରିବାସୀ, ଅଥଚ ଅମର ଦୁର୍ଲ୍ଲଭ ଆତ୍ମା—କେଉଁ ଭାଗ୍ୟବତୀ ଆପଣଙ୍କର ଜନ୍ମଦାତ୍ରୀ- କେଉଁ ଗରିଷ୍ଠାନ ଦେଶ ଆପଣଙ୍କର ଜନ୍ମରେ ଧନ୍ୟ ?

ସନ୍ନ୍ୟାସୀ—ବଡ଼ ଅସଙ୍ଗତ ପ୍ରଶ୍ନ ସମ୍ରାଟ, ସଂସାରର ସମସ୍ତ ନାରୀ ମୋର ଜନନୀ—ସାରାସଂସାର ମୋର ଜନ୍ମଭୂମି, ତଥାପି ଯଦି ଶୁଣିବାକୁ ଉତ୍ସୁକ ଥାଅ ଶୁଣ—କଳିଙ୍ଗ ମୋହର ଜନ୍ମଭୂମି—ରାଜା ବ୍ରହ୍ମାଦିତ୍ୟ ମୋ'ର ଜନ୍ମଦାତା ଏବଂ କୁମାର ମାଧବାଦିତ୍ୟ ମୋ'ର ପ୍ରାକ୍ତନ ନାମ ।

ସମସ୍ତେ—କୁମାର ମାଧବାଦିତ୍ୟ ?

ବୀର—ପିତା, ପିତା, ଜନ୍ମଦାତା ମୋ'ର ! ମୋତେ ସତ୍ୟପଥ ଦର୍ଶାଇ- ଦିଅ—( ପୁଣି ଗୋଡ଼ତଳେ ପଡ଼ିବା )

ସନ୍ନ୍ୟାସୀ—କାହିଁକି, ଆଗରୁତ ତୋର ବିବେକ ତୋତେ ସେ ସନ୍ଧାନ ଦେଇଛି—( ଉଠ )

ଅଶୋକ—( ସ୍ୱଗତଃ ) ଠିକ୍ କ୍ଷତ୍ରିୟର ବୀରତ୍ୱ ଏବଂ ବ୍ରାହ୍ମଣର ପ୍ରତିଭା—କର୍ମ୍ମ ସହିତ ଧର୍ମ୍ମର ସମ୍ମିଶ୍ରଣ—

ସଙ୍ଘ—ମୋ'ର କ'ଣ ହେବ ଗୁରୁ ?

ସନ୍ନ୍ୟାସୀ—ତୁତ ମା ଶକ୍ତି ସଞ୍ଚାରିଣୀ—ବିଭିନ୍ନ ଚିନ୍ତାର ମିଳନସେତୁ; ସେବା ସାନ୍ତ୍ୱନାର ସୁରଭିଧାରା—

ସଙ୍ଘ—(ଲଜ୍ଜିତ ହେବା )

ସନ୍ନ୍ୟାସୀ—ସମ୍ରାଟ ଆଜ ତୁମ୍ଭର ଆନନ୍ଦର ଦିନ—ଆଜ ପ୍ରକୃତ ବିଜୟର ଦିନ—ସାମାନ୍ୟ ଦେଶ ଜୟ କରି ଯେ ଆନନ୍ଦ ପାଇବ ଏବେ ଆପଣାକୁ ଜୟ କରି ତାହାର କୋଟି ଗୁଣ

ପାଇବ । ଆଜି ତୁମ୍ଭେ କାମନା ବିଜେତା—ଭିକ୍ଷୁ ମୁଁ-ମୋତେ ଗୋଟିଏ ଭିକ୍ଷାଦେବ ?

ଅଶୋକ—ଆପଣ ଯଦି ଭିକ୍ଷୁ ତେବେ ମୁଁ ସେହି ଭିକ୍ଷୁ ବ୍ରତରେହିଁ ପୃଥିବୀରେ ସମସ୍ତ ମହିଭିକ୍ଷୁ; ମୁଁ ଯେ ଭିକ୍ଷୁର ଭିକ୍ଷୁ—ଆଦେଶ କରନ୍ତୁ ।

ସନ୍ନ୍ୟାସୀ—ଆଜି କିଛି ନୁହେଁ—ମୁଁ ଚାହେଁ ମୋର ପୁତ୍ର ପୁତ୍ରୀ ଦୁହିଁଙ୍କର ମଧୁର ମିଳନ । ଅର୍ଥାତ ବୀର ଓ ସଂଘମିତ୍ରାର ପ୍ରୀତିକ ବିବାହ ।

ସଂଘ—ବିବାହ ! କର୍ତ୍ତବ୍ୟରେ ଉତ୍ସର୍ଗ ଯେ ମୋ'ର ଜୀବନର ବ୍ରତ ଗୁରୁଦେବ !

ବୀର —( ସଙ୍କୁଚିତ ହେବା )

ସନ୍ନ୍ୟାସୀ—ଅକର୍ତ୍ତବ୍ୟ କିଛି ହେବ ନାହିଁ—ବରଂ ବ୍ରତ ସୁସମ୍ପନ୍ନ ହେବ ବିଶ୍ୱର ମଙ୍ଗଳ ପାଇଁ, ମାନବର ଶିକ୍ଷା ପାଇଁ, ହତାଶ ହୃଦୟର ପ୍ରେରଣା ପାଇଁ ଏବଂ ଧର୍ମ୍ମର ପ୍ରଚାର ପାଇଁ ! ମୁଁ ଏ ମିଳନ ପ୍ରୟାସୀ, ଏଥିରେ କାମନାର ଆବିଳତା ନାହିଁ । ନାରୀ ପୁରୁଷର ଆର୍ଦ୍ଧାଙ୍ଗ—ନାରୀ ଅଭାବରେ ପୁରୁଷ ଅପୂର୍ଣ୍ଣ—ନାରୀ ନ ଥିଲେ ପୁରୁଷ ଅଶକ୍ତ—ଜଗତର ଅର୍ଦ୍ଧ ସମାଜ ନାରୀ । ତା'ର ମଙ୍ଗଳ ଚେଷ୍ଟାରେ ମହାବୀର ନାରୀ ନ ହେଲେ କିଏ ଗ୍ରହଣ କରିବ ? ପୁରୁଷର ଅନ୍ତଃପୁରରେ, ନାରୀ ନ ହେଲେ କିଏ ଶାନ୍ତିବାଣୀ ଶୁଣାଇବ ? ଲାଲସା ଓ କାମନା ଜଡ଼ିତ ନରକୁ, ନାରୀ ନ ହେଲେ କିଏ ନିଷ୍କାମ—ତତ୍ତ୍ୱର ମୁକ୍ତିମନ୍ତ୍ରରେ ଅନୁପ୍ରାଣିତ କରିବ ? ପଥଭ୍ରାନ୍ତ, କର୍ତ୍ତବ୍ୟ ସ୍ଖଳିତ ନରକୁ, ନାରୀ ନ ହେଲେ କିଏ ପୁଣି ସ୍ୱ-କର୍ତ୍ତବ୍ୟରେ ଟାଣି ଆଣିବ ?

ଅଶୋକ ଆ ମା, ତୋ'ର ଗୁରୁର ଆଜ୍ଞା ତୋ'ର ମଧୁର ମିଳନ ଦୃଶ୍ୟରେ ତୋ'ର ଏ ଅବୋଧ ଅଜ୍ଞାନ ପିତ ନୟନସାର୍ଥକ କରୁ । ( ଦୁହିଙ୍କର ହାତ ଧରି ମିଳାଇବା ଦୁହେଁ ପ୍ରଣାମ କରିବା )

ସନ୍ନ୍ୟାସୀ—ଏତେଦିନ ଐର,ତୋର ଖଣ୍ଡଗିରି ଗୁମ୍ଫା ନିର୍ମାଣ ସଫଳ । ଆଜି ତୁ ପୂର୍ଣ୍ଣ ଏବଂ ଆଜିଠାରୁ ଦିଗ୍‌ବିଜୟୀ ଅଶୋକ "ଦେବାନା ପ୍ରିୟଦର୍ଶୀ ଧର୍ମାଶୋକ"

( ଦୂରରେ ଖଣ୍ଡଗିରି ଗୁମ୍ଫା ଚତୁଃପାର୍ଶ୍ୱରେ ତରୁଣ ଅରୁଣର ରକ୍ତରାଗ ରଞ୍ଜିତ ହୋଇ ଉଠିଲା—ଚତୁର୍ଦ୍ଦିଗରେ ଗୋଟାଏ ପୁଲକର ପ୍ରବାହ ଖେଳିଗଲା—ସୁମଧୁର ଐକତାନ ବାଦ୍ୟ ହେଲା—ମହା-ପୁରୁଷଙ୍କ ଆଦେଶକୁ ସଙ୍ଘ ଓ ଐର ମଥା ପାତି ଗ୍ରହଣ କଲେ, ପ୍ରୀତି ଓ ମୈତ୍ରୀର ବନ୍ଧନରେ ପ୍ରକୃତି ନିଜର ଅସ୍ତିତ୍ୱ ଭୁଲିଗଲା )

( ଯ ବ ନି କା ପ ତ ନ )